ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀସ୍‌ଦେଶର କାହାଣୀ

୩





ଗ୍ରନ୍ଥମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀସ୍‌ଦେଶର କାହାଣୀ

[ ତୃତୀୟ ଭାଗ ]

ସଂକଳକ

ଶ୍ରୀ ବଂଶୀଧର ଦାଶ, ବି. ଏ., ଡ଼ି. ଇଡ଼ି.

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟସ୍, ସୂତାହାଟ, କଟକ-୧

ପରିମାର୍ଜିତ ପ୍ରଥମ ସଂସ୍କରଣ : ଫେବ୍ରୁୟାରୀ, ୧୯୯୬

ମୂଲ୍ୟ : ଟ. ୨୦/-

## ସୂଚୀ

# କୋଳି ଓ କମଳା

ଗୋଟିଏ ଗାଆଁରେ ଯାନିକାସ୍ ବୋଲି ଜଣେ ଲୋକ ଥାଏ । ନିପଟ ଅଳସୁଆ ଲୋକ। ଦିନ ରାତି ଶୁଏ। ଘରେ ସ୍ୱାମୀଟିକୁ ସ୍ତ୍ରୀଟିଏ, ଲୋକ ବୋଲି ଦୁଇଜଣ; ତଥାପି ଉପାର୍ଜନ କିଛି ନ ଥିବାରୁ ସେ ଦୁଇ ପେଟକୁ ବି ଦୁଇବେଳା ଦୁଇବକତ ଖାଇବାକୁ ମିଳେନା। ବଡ଼ ହନ୍ତସନ୍ତ ହୋଇ ଚଳନ୍ତି। ତେବେ ଯାନିକାସ୍ ଲୋକଟି ଏତେ ଅଳସୁଆ ହେଲେ କଣ ହେଲା, ଗୋଟିଏ ଭଲ ବିଦ୍ୟା ଶିଖିଥାଏ। ସେ ବଡ଼ ସୁନ୍ଦର ବଂଶୀ ବଜାଇ ଜାଣେ। ସେ ଯେତେବେଳେ ତାନ ଧରି ବଂଶୀ ବଜାଏ, ସେତେବେଳେ ଚାଲିଯାଉଥିବା ଲୋକ ବି ଦଣ୍ଡେ ଠିଆହୋଇ ଶୁଣେ। ଘରେ ପଛେ ଭାତପାଖକୁ ଲୁଣ ନ ଥାଉ, ଯାନିକାସ୍ ତା'ର ବଂଶୀଖଣ୍ଡିକ ଧରି କେଉଁ ତୋଟାରେ କି ପଡ଼ିଆରେ ଚିତ୍‌ହୋଇ ଶୋଇପଡ଼ି ତାନ ତୋଳିଦେଇଥାଏ।

ଦିନକର କଥା, ଯାନିକାସ୍ ଗୋଟିଏ ତୋଟାରେ ଗଛତଳେ ଶୋଇ ବଂଶୀ ବଜାଉଛି, ତା ବଂଶୀସ୍ୱନରେ ମୋହିହୋଇ ଗୋଟିଏ ସାପ ତା' ଗାତରୁ ବାହାରିଆସିଲା। ଯାନିକାସ୍ ଯେତେବେଳେ ଦେଖିଲା ଚକଚକିଆ ହଳଦିଗଣ୍ଡିଆ ସାପଟାଏ ଆସି ତା ବଂଶୀର ତାନରେ ଫଣା ଟେକି ଖେଳୁଛି; ସେ ଭୟ କ'ଣ କରିବ, ନିଜ ବଂଶୀସ୍ୱନକୁ ମନେମନେ ପ୍ରଶଂସାକରି ଆହୁରି ଅଧିକ ତାନ ଲୟ ଦେଇ ବଜାଇବାକୁ ଲାଗିଲା। ତା ବଂଶୀବଜା ଶେଷ ହେବା ପରେ ସେ ଦେଖିଲା ସାପଟି ଚୁପ୍‌କରି ତା ବିଳାକୁ ଚାଲିଯାଇ ପୁଣି ସେ ଭିତରୁ ଫେରିଆସିଲା। ଫେରିବାବେଳେ ସାପଟି ତା ପାଟିରେ ଗୋଟିଏ ସୁନା ମୋହର ଧରିଥାଏ। ଯାନିକାସ୍ ଚାହିଁଛି, ସାପଟି ସୁନା ମୋହରଟି ଆଣି ତା ପାଖରେ ଥୋଇଦେଇ ଚାଲିଗଲା। ଏ ଘଟଣା ଦେଖି ଯାନିକାସ୍ ତା ନିଜ ଭାଗ୍ୟକୁ ପ୍ରଶଂସା ନ କରି ରହିପାରିଲାନାହିଁ। ସାପ ପରି ଦୁଷ୍ଟ ଜୀବ, ତାକୁ ଆଘାତ କରିବ କଣ, ଓଲଟି ତା ପାଖକୁ ଉପହାର ଆଣିଦେଲା। ଭାବିଲା, ଯଦି ସବୁଦିନେ ଏହିପରି ଘଟିବ, ତେବେ ତା ଭାଗ୍ୟ ବଦଳିଯିବ। ଗାଆଁର କିଏ ଏବେ ଦିନକୁ ଗୋଟାଏ କରି ସୁନା ମୋହର କମାଉଛି? କମାର ବଢ଼େଇମାନେ ଦିନତମାମ ଲୁହା ପିଟି ପିଟି ବା କାଠ କାଟି କାଟି ଯାହା ରୋଜଗାର କରୁଛନ୍ତି, ସେଥିରେ ଦୁଇବେଳା ଦୁଇବକତ ଖାଇବାକୁ ମିଳୁନି। ଏହା ଭାବି ଯାନିକାସ୍ ମନଖୁସିରେ ମୋହରଟି ଧରି ଘରକୁ ଚାଲିଆସିଲା। ତାର ହସହସ ମୁହଁ ଦେଖି ସ୍ତ୍ରୀ ପଚାରିଲା, ''କିଗୋ, ଆଜି ତ କଣ ଭାରି ଖୁସି! କେଉଁଠୁ କିଛି ପାଇଯାଇଛ କି?''

ଯାନିକାସ୍ ଆଙ୍ଗୁଠିରେ ଫୁଟୁକି ମାରି ଭାର୍ଯ୍ୟା ହାତକୁ ମୋହରଟି ବଢ଼ାଇଦେଲା। ସୁନା ମୋହରଟି ଦେଖି ବିଚାରୀ ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ। କିନ୍ତୁ ଯାନିକାସ୍ କହିଲା, ''ଆଲୋ, ଏତିକି କ'ଣ; ରହିଥା, ଇମିତି ଆହୁରି

କେତେ ଆଣିବି !''

ତା ପରଦିନ ୟାନିକାସ୍ ଯାଇ ସେହି ଗଛତଳେ ଶୋଇ ବଂଶୀ ବଜାଉଛି, ଦେଖିଲା ସାପଟି ଆସି ତା ତାନେତାନେ ନାଚୁଛି। ନିଜ ଭାବନାଟା ସତହୋଇଯିବା ଦେଖି ୟାନିକାସ୍ ଖୁବ୍ ଖୁସିହୋଇଗଲା। ସେଦିନ ବି ସାପ ତା ପାଖକୁ ଗୋଟିଏ ସୁନାମୋହର ଆଣିଦେଲା। ଏଥର ୟାନିକାସ୍‌କୁ ସୁନ୍ଦର ଧନ୍ଦାଟିଏ ମିଳିଗଲା। ସେ ପ୍ରତିଦିନ ଯାଇ ସେଠାରେ ବଂଶୀ ବଜାଇଲା ଏବଂ ପ୍ରତିଦିନ ସୁନା ମୋହର ଆଣିଲା। ଦୈନିକ ଏପରି ସୁନା ପାଇବା ଫଳରେ ତା ଘରର ଚଳଣି ବଦଳିଗଲା। ଦୁଇବେଳା ରୁଟି, ଲହୁଣି, ଫଳ, ଦୁଧ, ମହୁ କିଣି ଖାଇଲା ଭାର୍ଯ୍ୟା ଲାଗି ନାନା ଜାତିର ସୁନା ଅଲଙ୍କାର ଗଢ଼ାଇଦେଲା। ନାନା ଦାମିକା ପୋଷାକ କିଣି ପିନ୍ଧିଲା। ଏସବୁ ଖର୍ଚ୍ଚ କରି ମଧ୍ୟ ସେ ପ୍ରତିଦିନ କିଛି କିଛି ସଞ୍ଚିଲା। ବର୍ଷେ ଦୁଇ-ତିନିଟା ଭିତରେ ତା ବାକ୍‌ସରେ ବେଶ୍ ଥୋଡ଼ାଏ ମୋହର ଜମାହୋଇଗଲା। ଏତେ ଶୀଘ୍ର ତା ଭାଗ୍ୟଟା ଏପରି ବଦଳିଗଲା ଦେଖି ଲୋକେ ଈର୍ଷା କରିବାକୁ ଲାଗିଲେ କିନ୍ତୁ ଭିତର ଗୁମରଟି କେହି ଜାଣିପାରିଲେ ନାହିଁ।

ଏପରି କିଛିଦିନ ବିତିଯିବା ପରେ ଦିନେ ୟାନିକାସ୍ ବଂଶୀ ବଜାଉଛି, ଏ ସମୟରେ ସାପଟି ଆସି କହିଲା, ''ଭାଇ, ଏଥର ମୋର ଶେଷକାଳ ଆସିଗଲା। ମୁଁ ଆଉ ତୁମ ବଂଶୀ ସହିତ ନାଚି ପାରିବି ନାହିଁ। ତେବେ ଗୋଟିଏ କଥା ମନେ ରଖ; ମୁଁ ମରିଯିବା ପରେ ମୋ ମଲା ଦେହଟି ନେଇ ତୁମ ଘର ବଗିଚାରେ ପୋତିଦେବ ଯେ ମୁଁ ସେଠାରେ ଗୋଟିଏ କୁହୁକ ଗଛ ହୋଇ ଉଠିବି। ସେ ଗଛରେ କମଳା ଫଳିବ; ପୁଣି ତୁମେ ଚାହିଁଲେ ସେଥିରେ କୋଳି ବି ଫଳିବ। ଯଦି ସେ ଗଛମୂଳରେ ବସି ତୁମେ ମନମତାଣିଆ ସ୍ୱରରେ ବଂଶୀ ବଜାଇବ, ତେବେ ଚାହୁଁ ଚାହୁଁ ସେଥିରେ ପାଚିଲା କମଳା ଝାଙ୍କିହୋଇଯିବ। ନାହିଁ, ଯଦି ଟିକିଏ ଦୁଃଖ କରୁଣ ସ୍ୱରରେ ବଂଶୀ ବଜାଇଦେବ, ତେବେ କମଳା ଉଭାନ ହୋଇଯାଇ ସେ ଗଛରେ ପେନ୍ଥା ପେନ୍ଥା ହୋଇ କୋଳି ଫଳିଯିବ। କିନ୍ତୁ ସାବଧାନ, ଏ ଗୁପ୍ତ ରହସ୍ୟଟି ଯେପରି ତୁମ ଘରଲୋକ ଛଡ଼ା ବାହାର ଲୋକ କେହି ନ ଜାଣେ।'' ଏତିକି କହିସାରି ସାପଟି ସେଇଠି ମରି ପଡ଼ିଲା। ୟାନିକାସ୍ ସେ ମଲା ସାପଟି ନେଇଆସି ତା ଘର ଆଗରେ ଥିବା ଛୋଟ ବଗିଚାରେ ପୋତିଦେଲା। ଅଳସୁଆ ଲୋକ, ବଗିଚା ଖଣ୍ଡିକ ବି କେବେ ସଫାକରେନାହିଁ ଯେ ସେଇଟା ଘାସ-ବଣ ହୋଇ ପଡ଼ିଥିଲା। ବର୍ତ୍ତମାନ ଏପରି କୁହୁକ ଗଛ ହେବ ଜାଣି ଓଳିଏ ଲାଗି ବଗିଚାର ଘାସ ସବୁ ସଫାକରିଦେଲା। ତା ପରଦିନ ସକାଳୁ ଉଠି ସେ ବଗିଚାକୁ ଚାହିଁଦିଏ ତ, ଦେଖିଲା ସେଥିରେ ଗୋଟିଏ ସୁନ୍ଦର ବଡ଼ ଗଛ ଠିଆହୋଇଛି। ରାତିକ ଭିତରେ ଗଛ ଉଠି ଏତେ ବଡ଼ ହୋଇଯିବା କିଛି ସାମାନ୍ୟ ଘଟଣା ନୁହେଁ। ସାପଟାହିଁ ଏହି କୁହୁକ ଗଛ ହୋଇଉଠିଛି ଜାଣି ୟାନିକାସ୍ ଗଛ ମୂଳରେ ବସି ମନମତାଣିଆ ମଧୁର ସ୍ୱରରେ ବଂଶୀ ବଜାଇଦେଲା। ତା ବଂଶୀବାଜଣା ସରିଛି କି ନାହିଁ, ଦେଖାଗଲା ଗଛଟିରେ ଖୁବ୍ ବଡ଼ ବଡ଼ ପାଚିଲା କମଳା ଝୁଲୁଛି।

ଏତେଗୁଡ଼ାଏ ନାଲି ଟହଟହ ପାଚିଲା କମଳା କେଉଁ ଗଛରେ ଫଳିଥିବା କଥା ଯାନିକାସ୍ ତା ଜୀବନରେ କେବେ ଦେଖିନ ଥିଲା କି ଶୁଣିନ ଥିଲା। ଗେରସ୍ତ ଭାର୍ଯ୍ୟା ମିଶି ଗୋଟିଏ ବଡ଼ ଡାଲାରେ ଡାଲାଏ କମଳା ତୋଳିପକାଇଲେ। ଯାହା ଖାଇବାର ଖାଇଲେ; ବାକି ଗୁଡ଼ାକ ବାଣ୍ଟିଲେ।

କିଛି ଦିନ ଏପରି କମଳା ଖାଇବାପରେ ଯାନିକାସ୍‌ର କୋଳି ଖାଇବାକୁ ମନହେଲା। ସେ ସକାଳୁ ଉଠି କୁହୁକ ଗଛ ମୂଳରେ ଗୋଟିଏ କରୁଣ ସ୍ୱରରେ ବଂଶୀ ବଜାଇଦେଲା। ସଙ୍ଗେ ସଙ୍ଗେ କମଳାଗୁଡ଼ାକ ଉଭେଇ ଯାଇ ଗଛଟାରେ ପେନ୍ଥାପେନ୍ଥା ହୋଇ କୋଳି ଫଳିଗଲା। ଇମିତି ପାଚିଲା କୋଳି ଭରିହୋଇଗଲା ଯେ କୋଳି ଭାରରେ ଗଛର ଡାଳଗୁଡ଼ାକ ତଳକୁ ନଇଁପଡ଼ିଲା। ଯେତେ ଖାଇଲେ, ଯେତେ ବାଣ୍ଟିଲେ ବି ସେ କୋଳି ସରିଲା ନାହିଁ। ଏହିପରି ଆଜି କୋଳି ତ କାଲି କମଳା ଖାଇ ଯାନିକାସ୍‌ର ଦିନ ଖୁବ୍ ଆରାମରେ କଟିଗଲା।

ଦିନକର କଥା। ସେ ଗାଆଁର ଜଣକ ଘରକୁ ଜଣେ ଜାହାଜୀ କପ୍ତାନ ଆସିଥାନ୍ତି। କପ୍ତାନ୍ ଖୁବ୍ ଧନୀଲୋକ। ବାରଦେଶ ବୁଲିଛନ୍ତି, ବାରକଥା ଜାଣିଛନ୍ତି। ବନ୍ଧୁଘର ଭିତରଟାରେ କେତେ ମୁହଁ ଚିପି ବସିବେ ବୋଲି ସେ ଗାଆଁମୁଣ୍ଡରେ ଥିବା ଜଳଖିଆ ଦୋକାନରେ ଲୋକଙ୍କ ସହିତ ଟିକିଏ ଗପ କରିବା ଲାଗି ବାହାରିଲେ। ଯାଉ ଯାଉ ଯାନିକାସ୍‌ର ଗଛ ଉପରେ ତାଙ୍କର ନଜର ପଡ଼ିଗଲା। ସେତେବେଳକୁ ସେ ଗଛରେ କୁହୁକ କମଳା ଫଳ ଝୁଲୁଥାଏ। ଏତେ ଗୁଡ଼ାଏ ସୁନ୍ଦର ପାଚିଲା କମଳା ଦେଖି କପ୍ତାନ୍ ଗଛବାଲାକୁ ତାରିଫ ନ କରି ରହିପାରିଲେନାହିଁ। ଜଳଖିଆ ଦୋକାନରେ ଯାଇ ବସୁ ବସୁ ଗରାଖମାନଙ୍କ ଆଗରେ ସେ କମଳା ଗଛଟାର ପ୍ରଶଂସା କରିବାକୁ ଲାଗିଲ। ଯାନିକାସ୍ ବି ସେଠାରେ ବସି ଜଳଖିଆ ଖାଉଥାଏ। କପ୍ତାନ୍‌ଙ୍କ ମୁହଁରୁ ତା ଗଛର ପ୍ରଶଂସା ଶୁଣୁଶୁଣୁ ତା ମୁଣ୍ଡରେ ଗୋଟିଏ ଦୁଷ୍ଟ ବୁଦ୍ଧି ପଶିଗଲା। ସେ କହିଲା, ''କପ୍ତାନ୍ ସାହେବ, ଆପଣ ଯେଉଁ ଗଛଟି କଥା କହୁଛନ୍ତି, ସେଇଟା କମଳା ଗଛ ନୁହେଁ, କୋଳି ଗଛଟାଏ।''

କପ୍ତାନ୍ ସେ କଥାକୁ ହସରେ ଉଡ଼ାଇଦେଇ କହିଲେ, ''ଏଁ! ମୁଁ ନିଜ ଆଖିରେ କମଳା ଗଛଟା ଦେଖିଆସିଲି; ନାଲି ଟହଟହ କମଳାଗୁଡ଼ାକ ଝୁଲୁଛି। ତୁମେ କହୁଛ ନା, କମଳା ନୁହେଁ କୋଳି ଗଛଟାଏ! ହେଃ!'' ଯାନିକାସ୍ କହିଲା, ''ଆପଣ ଭୁଲ ଦେଖିଲେ; ସେଇଟା କମଳା ଗଛ ନୁହେଁକୋଳି ଗଛ।'' କପ୍ତାନ୍ ଜୋର୍‌ଦେଇ କହିଲେ, ''ମୋଟେ ନୁହେଁ, ମୋଟେ ନୁହେଁ। ତୁମେ ଭାବିଛ, ମୁଁ କୋଳି ଆଉ କମଳା ଭିତରେ କି ଫରକ ଅଛି, ଜାଣେ ନାହିଁ।'' ଯାନିକାସ୍ କହିଲା, ''ଆହେ ବାବୁ, ସେଇଟା ପରା ମୋ'ରି ବାରିର ଗଛ। ମୋ ଗଛଟାକୁ କଣ ଆପଣ ମୋଠାରୁ ବେଶି ଚିହ୍ନିଛନ୍ତି ?''

କପ୍ତାନ୍ କିନ୍ତୁ ନିଜ କଥାରୁ ଓହରିଲେ ନାହିଁ। କାହିଁକି ବା ଓହରନ୍ତେ ? ସେ ଯେତେବେଳେ ନିଜ ଆଖିରେ ନାଲି ଟହଟହ କମଳାଗୁଡ଼ାକ ଦେଖିଛନ୍ତି, ସେ ସେଗୁଡ଼ାକୁ କୋଳି ବୋଲି ବା କିପରି ମାନନ୍ତେ ? ଇମିତି ଯୁକ୍ତି-ତର୍କ ଉପରେ

କଥା ଚାଲୁ ଚାଲୁ ଜିଦାଜିଦି ଆରମ୍ଭ ହୋଇଗଲା । କଥା ବଢ଼ି ବଢ଼ି ଶେଷକୁ ସମସ୍ତଙ୍କ ସାମନାରେ ବାଜିରହିଲା ଯେ ଯଦି ସେଇଟା କମଳାଗଛ ହୋଇ ନ ଥିବ, ତେବେ କପ୍ତାନ୍ ୟାନିକାସ୍‌କୁ ଶହେ ମୋହର ଗଣିଦେବେ; ନା ଯଦି ସେଇଟା କମଳାଗଛ ହୋଇଥିବ, ତେବେ ୟାନିକାସ୍ ତାଙ୍କୁ ଶହେ ସୁନା ମୋହର ଗଣିଦେବ । ସେତେବେଳକୁ ରାତି ଅନ୍ଧାର ହୋଇଯାଇଥାଏ । କପ୍ତାନ୍ କହିଲେ ଯେ, ତା' ପରଦିନ ସକାଳୁ ସକାଳୁ ସେ ଗଛମୂଳକୁ ଚାଲିଆସି କାହାକଥା ଠିକ୍ କାହାକଥା ଭୁଲ୍ ପ୍ରମାଣ କରିଦେବେ । ୟାନିକାସ୍ ମନଖୁସିରେ ଘରକୁ ଫେରିଲା । କେତେବେଳେ ରାତି ପାହି ସକାଳ ହେବ, ସେ ଖାଲି ସେଇଥିକି ଚାହିଁ ବସିଥାଏ । ସକାଳ ହେଉହେଉ ସେ ବଂଶୀଟି ଧରି କୁହୁକ ଗଛମୂଳକୁ ଚାଲିଆସିଲା ଏବଂ ଗଛମୂଳରେ ବସି କରୁଣ ସ୍ୱରରେ ଟିକିଏ ବଂଶୀ ବଜାଇଦେଲା । ଆଖିପିଛୁଳାକେ ସେ ଗଛର ସବୁଗୁଡ଼ାକ କମଳା କୁଆଡ଼େ ଉଭାନ ହୋଇଯାଇ ତା ବଦଳରେ ଗଛଟା କୋଳିରେ ଝାଙ୍କି ହୋଇଗଲା । ଏତିକିବେଳେ ତା ଭାର୍ଯ୍ୟା କମଳା ତୋଳିବ ବୋଲି ଝୁଡ଼ି ନେଇ ସେଠାରେ ପହଞ୍ଚିଗଲା । ସେ ଯେତେବେଳେ ଏ ଦୃଶ୍ୟ ଦେଖିଲା, ପଚାରିଲା, ''କି ଗୋ, ଆଜି ପରା କମଳା ଆଚାର କରିବା ବୋଲି କହୁଥିଲ, ଏ ପୁଣ କ'ଣ କଲ ?''

ୟାନିକାସ୍ ଖପ୍‌ପା ହୋଇ କହିଲା ''ଏଇଲେ କମଳା ନାଆଁ ପାଟିରେ ଧରନା କହୁଛି । ଆଚାର ଯଦି କରିବୁ କୋଳି ତୋଳିନେ; କୋଳିରେ ଆଚାର ହେବ ନାହିଁ ନା କଣ ?''

ତା ଭାର୍ଯ୍ୟା ଆଉ ଦ୍ୱିତୀୟ କଥା ନକହି କୋଳି ତୋଳୁଛି, ଛାହାଚ୍ଚୀ କପ୍ତାନ୍ ଆସି ପହଞ୍ଚିଗଲେ । ଗଛଟାକୁ ଚାହିଁଦେଉଦେଉ ତାଙ୍କ ମୁହଁ ଫିକାପଡ଼ିଗଲା । ଦେଖିଲେ, ସତରେ ସେଇଟା କୋଳି ଗଛଟା ! ଗତକାଲି କିପରି ଯେ ସେ ଗଛଟାରେ ଏତେ କମଳା ଫଳିଥିବାର ଦେଖିଥିଲେ, କିଛି ବୁଝିପାରିଲେନାହିଁ । ତଥାପି ସେ ବଚନ ହରାଇବା ଲୋକ ନୁହନ୍ତି । ସେ ବିନା ଯୁକ୍ତିତର୍କରେ ସେଇଠି ଶହେ ସୁନା ମୋହର କାଢ଼ି ଗଣିଦେଲେ । ୟାନିକାସ୍ ଘରେ ଆହୁରି ଶହେ ସୁନା ମୋହର ଜମାହୋଇଗଲା । ଦେଖି ସ୍ୱାମୀ ସ୍ତ୍ରୀ ଆନନ୍ଦରେ ନାଚିଉଠିଲେ । ଟଙ୍କା ସୁନା ଦେଖି ପେଟ ପୂରିଗଲା; ଆଉ କମଳା ଆଚାର କଥା ମନେପଡ଼ିଲା ନାହିଁ ।

କିଛି ଦିନ ପରେ ବାଜି ପକାଇବା ଲାଗି ୟାନିକାସ୍‌କୁ ଆହୁରି ଗୋଟିଏ ମଉକା ମିଳିଗଲା । କଣ ହେଲା ନା, ସେ ଗାଆଁରେ ସୁନା ଅଳଙ୍କାର ବିକିବା ଲାଗି ଜଣେ ସୁନାରି ମହାଜନ ଆସି ପହଞ୍ଚିଗଲେ । ନାନା ଜାତିର ଅଳଙ୍କାର ଧରି ଗାଆଁ ଗାଆଁ ବୁଲି ବିକିବା ହେଲା ତାଙ୍କର ବ୍ୟବସାୟ । ଗାଆଁ ଭିତରେ ବୁଲୁ ବୁଲୁ ସେ ମହାଜନଙ୍କ ଆଖି ଯାଇ ୟାନିକାସ୍‌ର କୋଳିଗଛ ଉପରେ ପଡ଼ିଲା । ସେଦିନ ସନ୍ଧ୍ୟାବେଳେ ଗାଆଁ ଜଳଖିଆ ଦୋକାନରେ ବସି ଜଳଖିଆ କରୁ କରୁ ମହାଜନେ ଅନ୍ୟ ଗରାଖଙ୍କ ଆଗରେ ସେ କୋଳି ଗଛଟାର ଖୁବ୍ ପ୍ରଶଂସା କରି କହିଲେ । ୟାନିକାସ୍ ବି ସେଠାରେ ଥାଏ । ମହାଜନଙ୍କ ମୁହଁରୁ କୋଳି ଗଛର

ପ୍ରଶଂସା ବାଣୀ ଶୁଣି ଭାବିଲା, ଏ ମହାଜନଠାରୁ ବି କିଛି ଆଦାୟ କରିହେବ। ତେଣୁ ସେ କହିଲା, "ମହାଜନେ, ମୋ ବାରିରେ ତ କମଳା ଗଛଟିଏ ଅଛି, ତୁମେ ତାକୁ କୋଳି ଗଛ ବୋଲି କିପରି କହୁଛ ?"

ମହାଜନେ ତାକୁ ଥଟ୍ଟାକରି କହିଲେ, "ନାହିଁ ବାବୁ, ତୁମ ନିଜ ବାରି ଗଛକୁ ତୁମେ ଚିହ୍ନିନଥାଇପାର; ଅନ୍ୟମାନେ ଚିହ୍ନି ନାହାନ୍ତି ବୋଲି କାହିଁକି ଭାବୁଛ ?" ଯାନିକାସ୍ କହିଲା, "ଆଉ କଣ ! ତୁମେ ତ ଭାରୀ କଥା କହିପାରୁଛ ? ହଇ ହେ, ମୋ ଗଛକୁ ମୁଁ ଚିହ୍ନିନି ?"

ମହାଜନ କହିଲା, "ଆହେ, ତୁମେ ଜୀବନରେ ଯେତେଟା କମଳା ଦେଖି ନ ଥିବ, ମୁଁ ତା'ର ଶହେ ଗୁଣ କମଳା ଖାଇଥିବି। ମୋତେ ଆଉ ଗଛ ଚିହ୍ନେଇବ ନାହିଁ।"

କଥା ମାଜିଲେ ମୋଟା। କଥାରୁ କଥା ବଢ଼ି ବଢ଼ି ଶେଷକୁ ଯାନିକାସ୍ ମହାଜନଙ୍କୁ ବାଜି ଉପରକୁ ଟାଣିଆଣି କହିଲା ଯେ ଯଦି ତା'ଗଛଟା କମଳାଗଛ ହୋଇ ନ ଥିବ, ତେବେ ସେ ପାଞ୍ଚଶହ ସୁନା ମୋହର ଛାଡ଼ିଦେବ; କିନ୍ତୁ ସେ ଗଛଟା କମଳାଗଛ ହୋଇଥିଲେ ମହାଜନ ପାଞ୍ଚଶହ ମୋହର ଛାଡ଼ିଦେବାକୁ ରାଜିଥିବା ଦରକାର। ମହାଜନେ ତ ନିଜ ଆଖିରେ ଗଛଟାରେ ଝାଙ୍କିହୋଇ କୋଳି ଫଳିଥିବାର ଦେଖିଛନ୍ତି; ସେ କାହିଁକି ଏଥିରେ ପଛଘୁଞ୍ଚା ଦିଅନ୍ତେ। ସେ ବି ଏଥିରେ ରାଜିହୋଇଗଲେ। ସେତେବେଳକୁ ରାତି ହୋଇଯାଇଥାଏ; ତେଣୁ କଥା ରହିଲା ସୁନାରି ମହାଜନ ତା' ପରଦିନ ସକାଳେ ଗଛ ଦେଖିବାକୁ ଆସିବେ। ତା' ପରଦିନ ସକାଳୁ ସକାଳୁ ଉଠି ଯାନିକାସ୍ ସେ ଗଛମୂଳରେ ମଧୁର ବଂଶୀ ବଜାଇ ଦେଇଛି କି ନାହିଁ, ମହାଜନେ ଆସି ପହଞ୍ଚିଗଲେ। ସେତେବେଳକୁ କିନ୍ତୁ ଗଛ ବଦଳିଗଲାଣି। ଗଛରେ ନାଲି ଟହଟହ କମଳା ଝୁଲୁଥିବା ଦେଖି ମହାଜନ ଆବାକାବା ହୋଇଗଲେ। ତାଙ୍କ ଦେହରୁ ଝାଳଟାଏ ବୋହିଗଲା। କ'ଣ ଆଉ କରିବେ ? ଚୁପ୍‌କିନା ପାଞ୍ଚଶହ ସୁନାମୋହର ଆଣି ଯାନିକାସ୍ ଦୁଆରେ ଗଣିଦେଇ ଗଲେ। ଏତେ ଟଙ୍କା ସୁନା ପାଇ ଯାନିକାସ୍ ଘରେ ଆନନ୍ଦ ଉତ୍ସବ ଆରମ୍ଭ ହୋଇଗଲା। କିନ୍ତୁ ସୁନାରି ମହାଜନ ବେପାରୀପୁଅ; ଦେଶଫେରା ଲୋକ। ସଂସାର ବିଷୟରେ ତାଙ୍କର ଅନୁଭୂତି କିଛି କମ୍ ନୁହେଁ। ସେ ଜାଣିଗଲେ ଯେ ଏ ଭିତରେ କିଛି ଗୋଟିଏ କୁହୁକବିଦ୍ୟା କାମ କରୁଛି; ନ ହୋଇଥିଲେ କୋଳି ଗଛଟା ରାତାରାତି କିପରି କମଳାଗଛ ହୋଇଯାଆନ୍ତା ! ତେଣୁ ଏ ଭିତରେ କି ଗୁମର ଅଛି, ତାହା ଜାଣିବା ଲାଗି ସେ ଗୋଟିଏ ଉପାୟ କଲେ।

ଦୁଇ-ଚାରି ଦିନ ପରେ ସେ ପୁଣି ତାଙ୍କ ସୁନା ଅଳଙ୍କାର ପସରା ନେଇ ଗାଆଁର ଘର ଘର ବୁଲି ବିକିବାକୁ ବାହାରିଲେ। ଏ ଘର ସେ ଘର ହୋଇ ବୁଲୁ ବୁଲୁ ସେ ଏପରି ବେଳକାଳ ଉଣ୍ଡି ଯାନିକାସ୍ ଘରକୁ ଚାଲିଆସିଲେ ଯେ, ସେତେବେଳକୁ ସେ ତା' ଘରେ ନ ଥାଏ। ମହାଜନେ ଯାନିକାସ୍‌ର ଭାର୍ଯ୍ୟା ଆଗରେ ଅଳଙ୍କାର ପସରା ମେଲାଇଦେଇ କହିଲେ, "ମାଆ, ଏଥର ଖୁବ୍ ଭଲ

ଭଲ ଚିଜ ଆଣିଛି। କିଛି ଭଲ ଅଳଙ୍କାର ଦେଖି ରଖିପକାଅ; ଆଉ ଦୁଇ ଚାରି ବର୍ଷଯାଏ ତୁମ ଏ ଅଞ୍ଚଳକୁ ଆସିହେବନାହିଁ।'' କଥାଭାଷା ହେଉ ହେଉ ସେ ଦେଖିଲା ଗଛରେ ସେତେବେଳକୁ କମଳା ବଦଳରେ କୋଳି ଫଳିଛି।

ସ୍ତ୍ରୀଲୋକଙ୍କର ଅଳଙ୍କାରରେ ବେଶି ଲୋଭ। ଚକଚକିଆ ସୁନା ଅଳଙ୍କାରଗୁଡ଼ିକ ଦେଖି ଯାନିକାସ୍ ଭାର୍ଯ୍ୟାର ଆଖି ଝଲସିଉଠିଲା। ସେ ଦୁଇ-ଚାରିଟି ଜିନିଷ ବାଛି ଦରଦାମ୍ କଷାକଷି କରିବାରୁ ସୁନାରି ମହାଜନ କହିଲେ, ''ତୁମଠାରୁ କଷାକଷି କରି ଦାମ୍ କଣ ନେବି, ମାଆ? ଯାହା ବାଗିରେ ଏପରି ଗଛ ଅଛି ଯେ ସେଥିରେ ଆଜି କମଳା ତ କାଲି କୋଳି ଫଳୁଛି, ତା'ର ଅଭାବ କ'ଣ ଯେ ମୁଁ ତାଙ୍କ ସାଙ୍ଗରେ ଦାମ୍ କଷାକଷି କରିବି? ଏ ଟଙ୍କା-ପଇସା ହିସାବରୁ କ'ଣ ପାଇବେ, ଗୋଟାଏ କାମ କରନ୍ତୁ, ମୋତେ ଏ ଗଛ ମଞ୍ଜିରୁ ପୁଞ୍ଜାଏ ଦେଇଦିଅନ୍ତୁ ଯେ, ମୁଁ ସେଇଥିରୁ ମୋ ଦାମ୍ ପାଇଯିବି। କଣ ବୁଝିପାରୁଛନ୍ତିଟି?''

ସୁନାରି କଥା ଶୁଣି ଯାନିକାସ୍‌ର ଭାର୍ଯ୍ୟା କହିଲା, ''ତୁମେ କିପରି ଏସବୁ କଥା ଜାଣିଲ କି? – ଏ ଗଛର କଣ ସେପରି ମଞ୍ଜି ଅଛି ଯେ ମୁଁ ତୁମକୁ ଦେବି?''

ମହାଜନ କହିଲା, ''ନ ହେଲେ କିଛି ଗୋଟିଏ କୁହୁକ ମନ୍ତ୍ରରେ ଏପରି ଫଳୁଛି। ଗୋଟାଏ କାମ କରୁନାହାନ୍ତି – ମୋତେ ସେ ମନ୍ତ୍ରପଦଟି ଶିଖାଇ ଦିଅନ୍ତୁ, ତା' ବଦଳରେ ଆପଣଙ୍କୁ ମୁଁ ମୋ ପସରାକ ଅଳଙ୍କାର ଛାଡ଼ିଦେବି।''

ଏକଥା ଶୁଣି ଯାନିକାସ୍‌ର ଭାର୍ଯ୍ୟା ଟିକିଏ ଥଙ୍ଗଥଙ୍ଗ ହେଲା। ଏଣେ ଅଳଙ୍କାରର ଲୋଭ, ତେଣେ ସ୍ୱାମୀର ତାକିଦା। ସୁନାରି ମହାଜନ ତା' ମନର ଏ କଥା ଜାଣିପାରି କହିଲା, ''ଯାହା କରିବେ ଶୀଘ୍ର କରନ୍ତୁ; ଘରେ ତ ତୁମ କର୍ତ୍ତା ନାହାନ୍ତି; ଆଉ ଡର କାହାକୁ ଯେ? ମୁଁ କ'ଣ ଏତେ ବଡ଼ କଥାଟା ଅନ୍ୟ କାହା ଆଗରେ କହିଦେବି ବୋଲି ଡରୁଛନ୍ତି?''

ଯାନିକାସ୍ ଭାର୍ଯ୍ୟା ଦେଖିଲା ମହାଜନ ସତ କହୁଛି। ସେ ଚୁପ୍‌କିନା କହିଦେଲା ଯେ ଏ ଗଛପାଇଁ ମନ୍ତ୍ରତନ୍ତ୍ର କିଛି ନାହିଁ। ଯାନିକାସ୍‌ର ବଂଶୀରେ ମଧୁର ମନମତାଣିଆ ସ୍ୱର ବାଜିଲେ ଗଛରେ କମଳା ଫଳୁଛି ଏବଂ ଦୁଃଖ, କରୁଣ ସ୍ୱର ବାଜିଲେ କମଳା ଉଭାନ ହୋଇ କୋଳି ଫଳିଯାଉଛି। ସୁନାରି ମହାଜନ ମହାଆନନ୍ଦରେ ଅଳଙ୍କାର ପସରାଟି ତା' ହାତକୁ ଟେକି ଦେଉ ଦେଉ କହିଲା, ''ସବୁ କଲ, ସେ ବଂଶୀ ଯଦି ମତେ ଟିକିଏ ଦିଅନ୍ତ, ତେବେ ମୁଁ ଟିକିଏ ବଜାଇବା ଅଭ୍ୟାସ କରନ୍ତି। ଏ ଗାଆଁରେ ତ ବଂଶୀ କିଣିବାକୁ ମିଳିବ ନାହିଁ; ସହରକୁ ଯିବି, ନା ବଂଶୀ କିଣିବି।''

ଯେଉଁ ମହାଜନ ଦୁଇ ପଦ କଥା ଲାଗି ଏତେଗୁଡ଼ାଏ ସୁନା ଅଳଙ୍କାର ଛାଡ଼ିଦେଲା, ତାର ଏ ସାମାନ୍ୟ ମାଗୁଣିଟାକୁ ଯାନିକାସ୍ ଭାର୍ଯ୍ୟା କିପରି ବା ମନାକରିଦିଅନ୍ତା। ସେ ଭାବିଲା, ପୁରୁଣା ବଂଶୀଟା ତ, ଦେଇଦେଲେ ଏବେ କୋଉ ସମ୍ପତ୍ତି କମିଯାଉଛି। ଏହା ଭାବି ସେ ବଂଶୀଟି ଆଣି ମହାଜନ ହାତରେ ଧରାଇଦେଲା।

ସେତେବେଳକୁ ମୁହଁସଞ୍ଜ ହୋଇଆସୁଥାଏ। ୟାନିକାସ୍ ତେଣେ ଜଳଖିଆ ଦୋକାନରେ ବସି ଗପ ମେଲିଦେଇଥାଏ। ଏ ସମୟରେ ସୁନାରି ମହାଜନ ଯାଇ ସେଠାରେ ପହଞ୍ଚିଗଲା। ସେ ସଙ୍ଗେ ସଙ୍ଗେ ୟାନିକାସ୍‌କୁ ଡାକି କହିଲା, "ଭାଇ, ତୁମେ ସେଦିନ ଜିଣିଗଲ ସତ, ହେଲେ ମୋର କାହିଁକି ଏଯାଏଁ ସନ୍ଦେହ ତୁଟିଲାନାହିଁ। ସେଦିନ ମୋ ଆଖିଟା ବି ଭଲନ ଥିଲା; ଢାଲଢାଲିଆ ଦେଖାଯାଉଥିଲା। ତୁମେ ମୋତେ କମଳାଗଛ ବୋଲି ଚିହ୍ନାଇଦେଲ, ମୁଁ ବି ହଁ ଭରିଦେଲି। ତେବେ ସେ କଥା ଛାଡ଼ନ୍ତୁ; ବର୍ତ୍ତମାନ ମୋ ଆଖି ଭଲହୋଇଗଲାଣି; ଗଛଟାକୁ ଆଉ ଥରେ ଦେଖନ୍ତେ କି?"

ୟାନିକାସ୍ ଭାବିଲା ମହାଜନଙ୍କର ବୋକାମି ଆହୁରି ଛାଡ଼ିନାହିଁ। ତେଣୁ ସେ ଯୁକ୍ତି ଆରମ୍ଭ କରିଦେଲା, "ତା'ହେଲେ ତୁମେ କହୁଛ, ମୁଁ ତୁମକୁ ଭୁଲେଇ ପାଞ୍ଚଶହ ସୁନା ମୋହର ମାରିନେଲି?" ମହାଜନ କହିଲା, "ମୋ ମନରେ ଯେତେବେଳେ ସନ୍ଦେହ ଆସୁଛି, ତୁମେ ସେଥିରୁ ଯାହା ଭାବିବ ଭାବ।"

ଗୋଟାଏ ମଉକା ମିଳିଛି ଦେଖି ୟାନିକାସ୍ କହିଲା, "ତା'ହେଲେ ଏଥର ବି ଗୋଟାଏ ବାଜି ରହୁ। ମୋ କଥା ଯଦି ମିଛ ହୁଏ, ତେବେ ମୁଁ ମୋ ସକଳ ସମ୍ପତ୍ତି ଛାଡ଼ିଦେବି। କିନ୍ତୁ ତୁମ କଥା ଯଦି ମିଛ ହୁଏ, ତେବେ?" ସଙ୍ଗେ ସଙ୍ଗେ ମହାଜନ କହିଲେ, "ତେବେ ମୁଁ ବି ମୋର ସକଳ ସମ୍ପତ୍ତି ଛାଡ଼ିଦେବି।"

ଏହି ସମୟରେ ୟାନିକାସ୍‌ର ମନେପଡ଼ିଗଲା ଯେ ଏ ଭିତରେ ସେ ଦିନେ କରୁଣ ସ୍ୱରରେ ବଂଶୀ ବଜାଇ କୁହୁକ ଗଛରେ କୋଳି ଫଳାଇଦେଇଛି। ତେଣୁ ସେ କହିଲା, "ଏ ଅନ୍ଧାର ରାତିରେ ତୁମେ ଆଖି ଖରାପ ଥିବା ଲୋକ ପୁଣି କ'ଣକୁ କ'ଣ ବୋଲି ଚିହ୍ନିବ। କାଲି ସକାଳେ ଆସ, ଆଖି ପୂରାଇ ଭଲକରି ଦେଖିନେବ।"

ମହାଜନ ମନେମନେ ହସି କହିଲା, "ହେଉ, ଏବେ ତୁମରି କଥା ହେଉ। ମୁଁ କାଲି ସକାଳେ ଆସିବି।" ଏପରି କଥାଭାଷା କରି ଦୁହେଁ ମନଖୁସିରେ ନିଜ ନିଜ ଘରକୁ ଚାଲିଗଲେ। ୟାନିକାସ୍ ଘରକୁ ଯାଉଯାଉ ଭାର୍ଯ୍ୟାର ଆୟଅଳଙ୍କାର ଦେଖି ପଚାରିଲା, "କିଲୋ, ଏସବୁ କେତେବେଳେ କିଣିଲୁ?"

ତା' ଭାର୍ଯ୍ୟା କହିଲା, "ସାହିକି ବିକ୍ରି ଆସିଥିଲା, କିଣିପକାଇଲି, ସୁନ୍ଦର ହୋଇନାହିଁ?" ସେ କିନ୍ତୁ ସୁନାରି ମହାଜନ କଥା କି ତାକୁ ବଂଶୀ ଦେଇଥିବା କଥା କହିଲାନାହିଁ। ରାତି ପାହି ସକାଳ ନ ହେଉଣୁ ୟାନିକାସ୍ ବଂଶୀ ବଜାଇ କୋଳି ଗଛକୁ କମଳା ଗଛ କରିଦେବାଲାଗି ବାହାରିପଡ଼ିଲା। କିନ୍ତୁ ଘରତମାମ ଖୋଜିଗଲେ ବି ତା' ବଂଶୀ ପାଇଲା ନାହିଁ। ଶେଷରେ ସେ ଖପ୍‌ପା ହୋଇ ଭାର୍ଯ୍ୟାକୁ ପଚାରିଲା, "କିଲୋ, ମୋ ବଂଶୀଟା କୁଆଡ଼େ ଗଲା?"

ମନେ ମନେ ପ୍ରମାଦ ଗଣି ତା ଭାର୍ଯ୍ୟା କହିଲା, "ସକାଳୁ ସକାଳୁ କାହିଁକି ବଂଶୀ ଖୋଜାଚାଲିଛି ଯେ?"

ୟାନିକାସ୍ କହିଲା, "ଆଲୋ, ସେ କଥା ପଛେ ପଚାରିବୁ; ତୁ ଆଉ

ଡେରିକରନା; ସେ ମହାଜନଟା ଆସି ପହଞ୍ଚିଯିବ। ଜଲ୍‌ଦି ଖୋଜ।'' ତା'. ଭାର୍ଯ୍ୟ ଛାନିଆ ହୋଇ ପଚାରିଲା, ''କେଉଁ ମହାଜନ ମ ?''

''ଆଲୋ, ସେହି ସୁନାରି ମହାଜନ। ତା'ର ଆହୁରି ଅକଲ ଆସିଲା ନାହିଁ ଯେ, ସେ ଆଜି ପୁଣି ବାଜିଲଗାଇଛି। କହିଛି ଏଇଟା ଯଦି କୋଳି ଗଛ ନ ହୋଇ କମଳା ଗଛ ହୋଇଥିବ, ତେବେ ସେ ତା'ର ସକଳ ସମ୍ପତ୍ତି ଆମକୁ ଛାଡ଼ିଦେବ।''

ଭାର୍ଯ୍ୟା ପଚାରିଲା, ''ଆଉ ଯଦି କୋଳି ଗଛ ହୋଇଥିବ ?''

''ତେବେ ଆମ ସମ୍ପତ୍ତିବାଡ଼ି ସବୁ ସେ ନେଇଯିବ।''

ଏତକ ଶୁଣି ଦେଉ ଦେଉ ତା ଭାର୍ଯ୍ୟା ଭୋ ଭୋ ହୋଇ କାନ୍ଦିଉଠିଲା। କଥା କ'ଣ ବୋଲି ଖୋଳ-ତାଡ଼ କରିବାରୁ ସେ ଶେଷରେ ସବୁ ସତକଥା ଖୋଲି କହିଦେଲା। ୟାନିକାସ୍ କି ଆଉ ଥୟ ଧରେ। ସେ ତା' ଭାର୍ଯ୍ୟାକୁ ପିଟି ପିଟି ଗାଆଁ ଶେଷମୁଣ୍ଡଯାଏ ନେଇଗଲା। ଏତିକିବେଳକୁ ସୁନାରି ମହାଜନ ଆସି ସେଠାରେ ପହଞ୍ଚିଗଲା। ୟାନିକାସ୍ ବିନା ଯୁକ୍ତିତର୍କରେ ନିଜର ସକଳ ସମ୍ପତ୍ତି ସେ ମହାଜନ ପାଖରେ ଛାଡ଼ିଦେଇ ବୁଲା ଫକିର ହୋଇ ବୁଲିଲା। ବୁଲି ବୁଲି ଅନେକ ଦୁଃଖ ପାଇବା ପରେ ଦିନେ ସେ ସୂର୍ଯ୍ୟଦେବତାଙ୍କୁ ପ୍ରାର୍ଥନା କରି କହିଲା, ''ହେ ପ୍ରଭୁ ! ମୋତେ ଆଉ କେତେ ଦୁଃଖ ଦେବ ? ମୁଁ ଶପଥ କରି କହୁଛି— ଆଉ ଦିନେ ଏପରି ଭୁଲ କରିବି ନାହିଁ କି ପରକୁ ଠକିବି ନାହିଁ। ଖାଲି ମୋ ସମ୍ପତ୍ତିତକ ମୁଁ କିପରି ଫେରିପାଇବି ତା'ର ଉପାୟ ବତାଇ ଦିଅନ୍ତୁ।''

ତା'ର ସେ ପ୍ରାର୍ଥନା ଶୁଣି ସୂର୍ଯ୍ୟଦେବତା ସନ୍ତୁଷ୍ଟ ହୋଇ କହିଲେ, ''ଶୁଣ, ଆଜି ସନ୍ଧ୍ୟାରେ ତୁ ସେ ସୁନାରି ମହାଜନ ସହିତ ଗୋଟାଏ ବାଜି ଲଗା ଯେ କାଲି ପଶ୍ଚିମ ଦିଗରେ ସୂର୍ଯ୍ୟ ଉଦୟ ହେବେ। ସେ ତ ମୋଟେ ଏକଥା ଗ୍ରହଣକରିବନାହିଁ। ତୁ କହିବୁ ଯଦି ତୋ' କଥା ସତ ହେବ, ତେବେ ସେ ତୋତେ ତୋ ସମ୍ପତ୍ତି ଫେରାଇଦେବ; ନା ଯଦି ତୋ କଥା ମିଛହେବ, ତେବେ ତୁ ତା'ର ଗୋଲାମ ହେବୁ।''

ୟାନିକାସ୍ ତା ଗାଆଁକୁ ଫେରିଯାଇ ସମସ୍ତଙ୍କ ଆଗରେ ବାଦ ପକାଇଲା ଯେ ତା ପରଦିନ ପଶ୍ଚିମ ଦିଗରେ ସୂର୍ଯ୍ୟ ଉଦୟ ହେବେ। ସୁନାରି ମହାଜନ ଏ କଥା ମୋଟେ ଗ୍ରହଣ ନ କରି କହିଲା, ''ବାଜି ରହିଲା, ହାରିଗଲେ କ'ଣ ଦେବୁ ?'' ୟାନିକାସ୍ କହିଲା, ''ମୋର ଆଉ ଅଛି କ'ଣ ଯେ ଦେବି। ହାରିଗଲେ ତୁମ ତଳେ ଗୋଲାମି କରିବି। କିନ୍ତୁ ମୋ କଥା ଯଦି ସତ ହୁଏ, ତୁମେ ମୋ ସମ୍ପତ୍ତି ଛାଡ଼ିଦେବ କି ?'' ସୁନାରି ମହାଜନ ଗୋଟାଏ ଶପଥ କରି କହିଦେଲା, ''ଠିକ୍ ଅଛି, ତୋ' କଥା ଯଦି ଠିକ୍ ହୁଏ, ତେବେ ମୁଁ ତୋ ସମ୍ପତ୍ତି ତୋତେ ଫେରାଇଦେବି।''

ତା' ପରଦିନ ସକାଳୁ କ'ଣ ଘଟିବ ବୋଲି ସମସ୍ତେ ଚାହିଁରହିଛନ୍ତି, ଦେଖିଲେ ପୂର୍ବ ଦିଗ ବଦଳରେ ପଶ୍ଚିମ ଦିଗରେ ସିନ୍ଦୂରା ଫାଟିଲା। ଚାହୁଁ ଚାହୁଁ ସୂର୍ଯ୍ୟଦେବତା

ପଶ୍ଚିମ ଆକାଶରେ ଝଲସି ଉଠିଲେ। ଏ ଘଟଣା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ସୁନାରି ମହାଜନ ନିଜ ସତ୍ୟ ମାନି ଯାନିକାସ୍‌କୁ ତା ସମ୍ପତ୍ତି ଫେରାଇଦେଲା ଏବଂ ଯାନିକାସ୍ ସେଦିନଠାରୁ ଧପ୍‌ପାବାଜି କରି ବାଜିପକାଇ ଲୋକଙ୍କୁ ଠକିବା ଛାଡ଼ିଦେଲା।

## ସିନ୍ଦୁକ-ଚଢ଼େଇ

ଗୋଟିଏ ଗାଆଁରେ ଗୋଟିଏ ଝିଅ ଥାଏ ଯେ ତା ନାଆଁ ମାରୁଦ୍ଧିଶା। ଭାରୀ ସୁନ୍ଦରୀ ଝିଅଟିଏ; ପୁଣି ସେ ଯହୁଁ ଯହୁଁ ବଡ଼ ହେଲା ତହୁଁ ତହୁଁ ଅଧିକ ସୁନ୍ଦରୀ ହେଲା। ତାକୁ ବିବାହ କରିବା ଲାଗି ଅନେକ ଆଡ଼ୁ ଅନେକ ଲୋକ ପ୍ରସ୍ତାବ ପଠାଇଲେ। କିନ୍ତୁ ତା ବାପା ଭାରୀ ଲୋଭୀ ଲୋକ। ସବୁ ଭଲ ପ୍ରସ୍ତାବ ଫେରାଇ ଦେଇ କହିଲେ, ସେ ତାଙ୍କ ଗାଆଁର ଜଣେ ଧନୀ ମହାଜନ ସହିତ ଝିଅର ବିବାହ କରାଇବେ। ସେ ମହାଜନଜଣକ ଧନୀ ସତ, ହେଲେ ବୟସ ପଚାଶ ପାର ହୋଇଯାଇଥାଏ; ଦୋହଡ଼ ପକ୍ଷ ବର, ଦିଶୁଥାନ୍ତି ଅପରଛନିଆ ବୁଢ଼ାଙ୍କ ପରି। ଏ ଖବର ପାଇ ମାରୁଦ୍ଧିଶାର ସାଙ୍ଗସାଥୀମାନେ ଆସି ତାକୁ ନାନା ଭାବରେ ଥଟ୍ଟା ପରିହାସ କରି କହିଲେ, ''ଲାଣ୍ଡି ମୁଣ୍ଡରେ ପାନିଆ, ବୁଢ଼ା ବରକୁ କନିଆ !''

ମାରୁଦ୍ଧିଶାର ମନ ପିତା ହୋଇଗଲା। ତା' ବାପ କିନ୍ତୁ ଅବୁଝା। ସେ କହିଲେ – ''ମଣିଷର ଧନ ଥିଲେ ସବୁ ଅଛି।'' କିନ୍ତୁ ଝିଅ ମନେ ମନେ ଠିକ୍ କଲା ସେ ଏ ବୁଢ଼ା ବରକୁ ଛମା ବାହା ହେବନାହିଁ। ଖାଲି ଉପରକୁ ବାପାଙ୍କ କଥାରେ ହଁ ଭରି କହିଲା, ''ବାପା ମ, ମତେ ତ ପର ଘରକୁ ପଠାଇଦେବ; ମୋ ପାଇଁ ଗୋଟିଏ କାଠ ସିନ୍ଦୁକ ତିଆରି କରିଦିଅ ଯେ, ମୁଁ ଆଉ କିଛି କହିବିନାହିଁ।'' ବାପା କହିଲେ, ''ନିଶ୍ଚୟ କରାଇଦେବି। ତୋର କିପରି ସିନ୍ଦୁକରେ ମନ, ମୋତେ କହ।''

ଝିଅ କହିଲା, ''ସିନ୍ଦୁକଟିଏ ହେବ ଯେ, ସେଥିରେ ତିନିଟି ଥାକ ଥିବ। ତା ଘୋଡ଼ଣିଟି ଭିତର ପଟୁ ଖୋଲିହେଉଥିବ ଏବଂ ଭିତରପଟୁ ବନ୍ଦହେଉଥିବ; ପୁଣି ସେ ଘୋଡ଼ଣିରେ ଗୋଟିଏ କଣା ଥିବ ଯେ ସେ ବାଟରେ ମଣିଷ ମୁଣ୍ଡ ଗଳିପାରୁଥିବ। ସେ ସିନ୍ଦୁକରେ ତିନି ଥାକରେ ମୋ ପାଇଁ ତିନି ସାର ପୋଷାକ ରଖିଦେବ। ଗୋଟିଏ ହେବ ଚନ୍ଦ୍ର, ସୂର୍ଯ୍ୟ ଓ ତାରାମାନଙ୍କର ଛବି ବୁଣାହୋଇଥିବା ଆକାଶୀ ନୀଳ ରଙ୍ଗର ପୋଷାକ, ଅନ୍ୟଟି ହେବ ମାଛ କଇଁଚ ଚିତ୍ର ବୁଣାହୋଇଥିବା ସମୁଦ୍ର ନୀଳ ରଙ୍ଗର ଏବଂ ଆଉ ଗୋଟିଏ ହେବ ଗଛ, ଲତା, ଫୁଲ, ଫଳ ବୁଣାଯାଇଥିବା ପୃଥିବୀ ପରି ସବୁଜ ରଙ୍ଗର। ଏତକ କରିଦେବ ଏବଂ ସେ ସିନ୍ଦୁକରେ ଦୁଇ କଡ଼ରେ କାଠର ଦୁଇଟି ଡେଣା ଲଗାଇଦେବ।''

ବାପା ବଢ଼େଇ ଡକାଇ ମାରୁଦ୍ଧିଶାର ବରାଦ ଅନୁଯାୟୀ ଗୋଟିଏ ସୁନ୍ଦର

ସିନ୍ଦୁକ ଗଢ଼ାଇଦେଲେ । ଭଲ ଦରଜି ଲଗାଇ ସେ କହିଥିବା ତିନି ରଙ୍ଗର ତିନି ସାର ପୋଷାକ ସିଲାଇ କରାଇଦେଲେ । ପୋଷାକପତ୍ର ସାଙ୍ଗକୁ ସିନ୍ଦୁକ ଭିତରେ ଝିଅପାଇଁ ନାନାପ୍ରକାର ଅଳଙ୍କାର, ଅତର, ପନିଅର, ସ୍ନୋ ପାଉଡ଼ର ବି ରଖିଦିଆଗଲା । ବିବାହ ଦିନ ପାଖେଇ ଆସୁଥାଏ । ଏଥର ପ୍ରତି ରାତିରେ ମାରୁଦ୍ଧିଶା ସେହି ସିନ୍ଦୁକ ଭିତରେ ପଶି ପ୍ରଭୁଙ୍କୁ ପ୍ରାର୍ଥନା କରିବାକୁ ଲାଗିଲା, ''ହେ ପ୍ରଭୁ, ମୋତେ ଏଠାରୁ ଉଦ୍ଧାର କରିନିଅ; ଏ ବୁଢ଼ା ବର ସହିତ ମୋର ବିବାହ କରାଇଦିଅନାହିଁ ।'' ସବୁ ରାତିରେ ତାର ଏପରି ପ୍ରାର୍ଥନା ଶୁଣି ଶୁଣି ପ୍ରଭୁଙ୍କର ମନ ତରଳିଗଲା । ମାରୁଦ୍ଧିଶା ସିନ୍ଦୁକ ଭିତରେ ପଶି ଉପରକୁ ମୁଣ୍ଡ କାଢ଼ି ପ୍ରାର୍ଥନା କରୁଛି, ଏ ସମୟରେ ସିନ୍ଦୁକଟି ଡେଣା ହଲାଇ ଚଢ଼େଇଙ୍କ ପରି ଆକାଶକୁ ଉଡ଼ିଗଲା । ମାରୁଦ୍ଧିଶା ପ୍ରଭୁଙ୍କୁ ଧନ୍ୟବାଦ ଦେଇ ବାହାରକୁ ଚାହିଁରହିଥାଏ । ସିନ୍ଦୁକଟି ଉଡ଼ି ଉଡ଼ି ସେ ଗାଆଁ ଛାଡ଼ି ଅନେକ ଦୂରକୁ ଚାଲିଗଲା । ରାତିତମାମ ଉଡ଼ିବା ପରେ ତା' ପରଦିନ ସିନ୍ଦୁକଟି ଯାଇ ଗୋଟିଏ ଉଚ୍ଚ ପାହାଡ଼ ଉପରେ ଓହ୍ଲାଇ ପଡ଼ିଲା ।

ମାରୁଦ୍ଧିଶା ସିନା ଉଡ଼ନ୍ତା ସିନ୍ଦୁକରେ ବସି ଘରୁ ପଳାଇଆସିଲା, ହେଲେ ଏ ଅଜଣା ଅଶୁଣା ପାହାଡ଼ ଉପରେ ବସି ସେ ନିଜକୁ ନିନ୍ଦିବାକୁ ଲାଗିଲା । ସେ ପାହାଡ଼ର ଯେଣେ ଚାହିଁଲା ତେଣେ ଖାଲି ଜଙ୍ଗଲ, ପାହାଡ଼ ପଛକୁ ପାହାଡ଼ । କ'ଣ କରିବ ବୋଲି ମାରୁଦ୍ଧିଶା ଭାବୁଛି, ଏ ସମୟରେ ଗୋଟିଏ ଶିକାର ପଛରେ ଦୌଡ଼ୁ ଦୌଡ଼ୁ ଜଣେ ରାଜକୁମାର ଆସି ସେଠାରେ ପହଞ୍ଚିଗଲେ । ଆଉ ଶିକାର ପଛରେ ଦୌଡ଼ିବେ କଣ, ଏ ବିଚିତ୍ର ସିନ୍ଦୁକ ଦେଖି ସେହିଠାରେ ଠିଆହୋଇଗଲେ । ସିନ୍ଦୁକ ଦୁଇପାଖରେ ଡେଣା ଦେଖି ସେ ଭାବିଲେ, ଏଇଟା ନିଶ୍ଚୟ ଗୋଟିଏ ଚଢ଼େଇ । ମାରୁଦ୍ଧିଶାର ସୁନ୍ଦର ମୁହଁଟି ଦେଖି ସେ ମୋହିହୋଇଗଲେ । ମାରୁଦ୍ଧିଶା କଥାଭାଷା ନ କହି କେବଳ ବଲବଲ କରି ଚାହୁଁଥାଏ । ରାଜକୁମାର ଭାବିଲେ ଏ ଚଢ଼େଇ ଯଦି ମଣିଷ ହୋଇଥାନ୍ତା, ତେବେ କେଡ଼େ ସୁନ୍ଦର ହୋଇ ନ ଥାନ୍ତା !! ଚଢ଼େଇଟି ଦେଖାଇବା ଲାଗି ସେ ଶିକାରକୁ ଆସିଥିବା ନିଜ ସାଙ୍ଗସାଥୀମାନଙ୍କୁ ଯାଇ ଡାକି ଆଣିଲେ । ରାଜକୁମାରଙ୍କର ସାଙ୍ଗସାଥୀମାନେ ସିନ୍ଦୁକଟି ଦେଖି କହିଲେ, ''ସତରେ ଏ ଗୋଟିଏ ଅଦ୍ଭୁତ ଚଢ଼େଇ, ଚାଲନ୍ତୁ ଏ ଚଢ଼େଇଟି ନେଇ ଆମ ନଅରରେ ପାଳିବା ।'' ରାଜକୁମାର ସଙ୍ଗେ ସଙ୍ଗେ ଲୋକ ଲଗାଇ ସିନ୍ଦୁକଟିକୁ ନଅରକୁ ବୋହିନେଲେ । ନଅରରେ ତାଙ୍କ ମାଆଙ୍କୁ ଯାଇ କହିଲେ, ''ମାମା, ଦେଖ, ମୁଁ ଜଙ୍ଗଲରୁ ତୁମ ଲାଗି ଗୋଟିଏ ଅପୂର୍ବ ଚଢ଼େଇ ଧରି ଆଣିଛି । ତା ମୁହଁଟି କେଡ଼େ ସୁନ୍ଦର, ଦେଖିଲ !''

ରାଣୀମାଆ ମାରୁଦ୍ଧିଶାର ସୁନ୍ଦର ମୁହଁ ଦେଖି କହିଲେ, ''ଆଲୋ, ସତରେ ଗୋଟିଏ ଝିଅର ମୁହଁ ପରି ହୋଇଛି ଲୋ ! କି ସୁନ୍ଦର ବେଣୀ, କି ସୁନ୍ଦର ଓଠ, ନାକ, ଆଖି . . . ସବୁ ତ ସୁନ୍ଦର !! ଯଦି ସତରେ ଝିଅଟିଏ ହୋଇଥାନ୍ତା, ତେବେ ଆକୁ ମୋ ନଅରରେ ବୋହୂକରି ରଖନ୍ତି । ଯାହାହେଉ, ମୁଁ ଆକୁ ଖୁଆଇ ପିଆଇ ପୋଷିବି ।''

ସେହି ଦିନଠାରୁ ଚଢ଼େଇ ରୂପରେ ରହିଥିବା ମାରୁଦ୍ଧିଶାକୁ ରାଣୀମାଆ ନାନା ପ୍ରକାର ଫଳମୂଳ ଓ ପିଠାପଣା ଖୁଆଇ ଆଦରରେ ପାଳିବାକୁ ଲାଗିଲେ। ଶୁଆ-ସାରିଙ୍କ ସହିତ କଥା ପରି ସେ ତା ସହିତ କଥାଭାଷା କରିବାକୁ ଲାଗିଲେ। କିଛି ଦିନ ଭିତରେ ସାହସ ପାଇ ମାରୁଦ୍ଧିଶା ବି କଥାଭାଷା କହିଲା। ଚଢ଼େଇମୁହଁରୁ ମଣିଷ ପରି କଥାଭାଷା ଶୁଣି ସମସ୍ତେ ଖୁସି ହୋଇଗଲେ। ଏଥର ରାଜକୁମାର ସବୁଦିନ ଆସି ସିନ୍ଦୁକ-ଚଢ଼େଇକୁ ଦେଖିବାକୁ ଲାଗିଲେ। ରାଣୀମାଆ ତାକୁ ଗୀତ ଶିଖାଇବା ଲାଗି ଜଣେ ଗୀତମାଷ୍ଟ୍ର ବି ରଖିଦେଲେ। ମାରୁଦ୍ଧିଶା ସିନ୍ଦୁକ ଭିତରେ ବସି ଦିନତମାମ କଥା କହେ, ଗୀତ ଗାଏ ଓ ନାନା ପ୍ରକାର ପିଠାପଣା ଫଳମୂଳ ଖାଏ ଏବଂ ରାତିରେ ସମସ୍ତେ ଶୋଇପଡ଼ିବା ପରେ ଚୁପ୍‌କିନା ସିନ୍ଦୁକରୁ ବାହାରି ନିତ୍ୟକର୍ମ ସାରି ପୁଣି ସିନ୍ଦୁକ ଭିତରେ ପଶିଯାଏ।

ଏପରି ହସ ଖୁସିରେ କିଛି ଦିନ କଟିଯିବା ପରେ ଇଷ୍ଟର୍ ପର୍ବ ଆସିଲା। ଇଷ୍ଟର୍ ହେଲା ବର୍ଷର ସବୁଠାରୁ ବଡ଼ ପର୍ବ। ପର୍ବ ଆରମ୍ଭ ହେଉ ହେଉ ସମସ୍ତେ ନୂଆ ପୋଷାକ ପିନ୍ଧି ବେଶଭୂଷା ହୋଇ ପ୍ରାର୍ଥନା କରିବା ଲାଗି ଗୀର୍ଜାକୁ ଚାଲିଗଲେ। ସକାଳୁ ସକାଳୁ ରାଜନଅର ଶୂନ୍ୟହୋଇଗଲା। ପାଖଆଖରେ ଆଉ କେହି ନାହାନ୍ତି ଦେଖି ମାରୁଦ୍ଧିଶା ସିନ୍ଦୁକରୁ ବାହାରି ତାର ଆକାଶୀ ନୀଳରଙ୍ଗର ପୋଷାକଟି ପିନ୍ଧି ବେଶଭୂଷା ହୋଇଗଲା। ସିନ୍ଦୁକରେ ଥିବା ତାର ଅଳଙ୍କାରଗୁଡ଼ିକ ପିନ୍ଧିପକାଇ ପ୍ରାର୍ଥନା କରିବାଲାଗି ସିଧା ସିଧା ଗୀର୍ଜାକୁ ଚାଲିଗଲା। ଗୀର୍ଜାରେ କେତେ ଆଡୁ କେତେ ଲୋକ ଆସି ରୁଣ୍ଡ ହୋଇଥାନ୍ତି। ମାରୁଦ୍ଧିଶା ଲୋକଗହଳି କାଟି ଠିକ୍ ରାଣୀମାଆଙ୍କ ପାଖରେ ଯାଇ ଠିଆହୋଇଗଲା। ସମସ୍ତଙ୍କ ସହିତ ସେ ବି ପ୍ରାର୍ଥନାରେ ମଜ୍ଜିଯାଇଛି, ରାଣୀମାଆଙ୍କ ଦୃଷ୍ଟି ତା ଉପରେ ପଡ଼ିଗଲା। ତାର ସେ ସୁନ୍ଦର ରୂପ ଦେଖି ରାଣୀମାଆଙ୍କ ଆଖି ଝଲସି ଉଠିଲା। ତା' ଆକାଶୀ ରଙ୍ଗର ପୋଷାକର ସେ ଚନ୍ଦ୍ର, ସୂର୍ଯ୍ୟ ଓ ତାରାର ଛବିଗୁଡ଼ିକ ସତରେ ବଡ଼ ଲୋଭିଲା ହୋଇଥାଏ। ରାଣୀମାଆ ଭାବିଲେ, ନିଶ୍ଚୟ ଏ ଜଣେ ରାଜକୁମାରୀ ହୋଇଥିବ; ଇମିତି ଝିଅଟିଏ ପାଇଲେ ସେ ଘରକୁ ବୋହୂ କରିନେବେ। ପ୍ରାର୍ଥନା ଚାଲିଥିବାରୁ ସେ ଆଉ ବେଶି ସମୟ ତାକୁ ଚାହିଁ ନ ପାରି ପ୍ରଭୁଙ୍କ ଉଦ୍ଦେଶ୍ୟରେ ଆଖି ବୁଜିଦେଲେ। କିନ୍ତୁ ଠିକ୍ ପ୍ରାର୍ଥନା ସରୁସରୁ ମାରୁଦ୍ଧିଶା ଲୋକଗହଳି କାଟି ଏଡ଼ିକି ବେଗରେ ସେଠାରୁ ପଳାଇଆସିଲା ଯେ, ସେ କୁଆଡୁ ଆସିଥିଲା, କୁଆଡ଼େ ଗଲା, ରାଣୀମାଆ କିଛି ଜାଣିପାରିଲେ ନାହିଁ। ଅନ୍ୟମାନେ ନଅରକୁ ଆସିବା ପୂର୍ବରୁ ସେ ନଅର ପଛବାଟେ ଭିତରକୁ ଚାଲି ଆସି ସିନ୍ଦୁକ ଭିତରେ ପଶିଗଲା! ରାଣୀମାଆ ତାକୁ ଗୀର୍ଜାର ଲୋକଗହଳି ଭିତରେ ଖୋଜି ଖୋଜି ଶେଷକୁ ନିରାଶ ହୋଇ ନଅରକୁ ଫେରିଆସିଲେ। ଆସୁ ଆସୁ ସିନ୍ଦୁକ-ଚଢ଼େଇକୁ ଚାହିଁ କହିଲେ, "ବୁଝୁଛୁ ଲୋ ଚଢ଼େଇ, ଆଜି ଗୀର୍ଜାରେ ଜଣେ ରାଜକୁମାରୀକି ଦେଖିଲି ଯେ ତା ମୁହଁଟି ଠିକ୍ ତୋରି ମୁହଁ ପରି ସୁନ୍ଦର। ତାକୁ ମୋ ଘରକୁ ବୋହୂ କରି ଆଣିଲେ ଭଲ ହୁଅନ୍ତା ନାହିଁ?"

ମାରୁଦ୍ଧିଶା କହିଲା, "କିନ୍ତୁ ମାଆ, ସେ ରଜାଝିଅ ବୋଲି ତୁମେ ଜାଣିଲ

କିପରି ? ସେ ଯଦି ଗରିବ ଘର ଝିଅ ହୋଇଥିବ ?''

ରାଣୀମାଆ କହିଲେ, ''ଆଲୋ, ଧନୀ ଗରିବରେ କ'ଣ ଅଛି । ଯେ ରୂପର ଗୁଣର ହେବ, ସେ ମୋର ରାଜକୁମାରୀ । ମୁଁ ତା ଧନରୁ କଣ ଖାଇବି ? ଆଜି ତ ତା ବାପଘର କେଉଁଠି ବୋଲି ପଚାରିଥାନ୍ତି; କିନ୍ତୁ ସେ ପରା ଇମିତି ଝିଅଟା, ଚାଲିଗଲା ଯେ ମୁଁ ତାକୁ ଖୋଜି ଖୋଜି ଥକ୍କା ହୋଇଗଲି ପଛେ ପାଇଲି ନାହିଁ ।''

ମାରୁଦ୍ଧିଶା କହିଲା, ''ଆଉ ତା'ହେଲେ !'' ରାଣୀମାଆ କହିଲେ, ''କାଲି ଫେରେ ଗୀର୍ଜାକୁ ଆସିବ ଯେ । କାଲି କଣ କରିବି ନା, ଗୀର୍ଜା ଦୁଆରେ ଦି'ଜଣ ସିପାହୀ ଜଗାଇଦେଇଥିବି । ସେ ଚାଲିଗଲା ବେଳେ ସିପାହୀ ଦି'ଜଣ ତା ପିଛା ଧରି ତା ବାପଘର କେଉଁଠି ଯାଇ ଦେଖି ଆସିବେ ।''

ତା ପରଦିନ ସକାଳୁ ସକାଳୁ ସମସ୍ତେ ପୁଣି ଗୀର୍ଜାକୁ ଚାଲିଗଲେ । ସମସ୍ତେ ଚାଲିଯିବା ପରେ ମାରୁଦ୍ଧିଶା ସିନ୍ଦୁକରୁ ବାହାରି ତାର ସମୁଦ୍ରରଙ୍ଗର ନୀଳ ପୋଷାକଟି ପିନ୍ଧି ବେଶଭୂଷା ହୋଇଗଲା ଏବଂ ନିଜ ପୋଷାକ ଭିତରେ ଦି'ଗଣ୍ଡା ସୁନା ମୋହର ଲୁଚାଇରଖି ସିଧା ଯାଇ ଗୀର୍ଜା ଭିତରେ ପଶିଗଲା । ଚିହ୍ନା ଅଚିହ୍ନା ଅନେକ ଲୋକ ଗୁଣ୍ଡହୋଇଥାନ୍ତି; କିନ୍ତୁ ତାକୁ କେହି ଚିହ୍ନି ପାରିଲେ ନାହିଁ । ସେ ଲୋକଗହଳି କଟାଇ ପୁଣି ଯାଇ ରାଣୀମାଆଙ୍କ ପାଖରେ ଠିଆହୋଇ ପ୍ରାର୍ଥନାରେ ମଜ୍ଜିଗଲା । ତାର ରୂପ ଦେଖିଦେଇ ରାଣୀମାଆଙ୍କ ପେଟ ପୂରିଗଲା । ପ୍ରାର୍ଥନା ତ ଚାଲିଥାଏ । ସମସ୍ତେ ମୁଣ୍ଡପୋତି ପ୍ରାର୍ଥନା କରୁଥାନ୍ତି । ପ୍ରାର୍ଥନା ଶେଷରେ ପୁରୋହିତ ମୁଣ୍ଡ ଟେକି ପ୍ରଭୁବାଣୀ ଶୁଣାଇବା ପୂର୍ବରୁ ମାରୁଦ୍ଧିଶା ଚୁପ୍‌କିନା ଉଠି ଗୀର୍ଜା ଭିତରୁ ପଳାଇଆସିଲା ।

ରାଜକୁମାରୀ ଗୀର୍ଜାରୁ ପଳାଇଯାଉଛନ୍ତି ଦେଖି ରାଣୀମାଆ ଜଗାଇଥିବା ସିପାହୀ ଦୁଇଟା ତା ପଛରେ ଗୋଡ଼ାଇଲେ । ମାରୁଦ୍ଧିଶା ଦୌଡୁଥାଏ; ଶେଷରେ ସେ ଯେତେବେଳେ ଦେଖିଲା ଯେ ସିପାହୀ ଦୁଇଟାଙ୍କୁ ପାରିହେବନି, ସେ କଣ କଲା ନା, ନିଜ ପୋଷାକ ଭିତରୁ ମୋହର ଗଣ୍ଡିକ କାଢ଼ି ସେମାନଙ୍କ ଆଡ଼କୁ ଫୋପାଡ଼ି ଦେଲା । ସିପାହୀଗୁଡ଼ାକ ତ ଲୋଭୀ, ସେମାନେ ଏ ସୁନା ମୋହର ପଡ଼ିଗଲା ଦେଖି ଆଉ ଆଗକୁ ନ ଦୌଡ଼ି ମୋହର ଗୋଟାଇବାରେ ଲାଗିଗଲେ । ମୋହର ଗୋଟାଉ ଗୋଟାଉ ଜଣକର ଊଣା, ଜଣକର ଅଧିକ ହେବାରୁ ଦିହେଁ ସେଠାରେ କଳହ ଆରମ୍ଭ କରିଦେଲେ । ସେମାନେ କଳିକରୁଥାନ୍ତି, ମାରୁଦ୍ଧିଶା ଏଣେ ନଅର ଭିତରେ ପଶି ନିଜ ବେଶଭୂଷା ବଦଳାଇ ସିନ୍ଦୁକ ଭିତରେ ଲୁଚିଗଲା ।

ଗୀର୍ଜାରୁ ଫେରି ରାଣୀମାଆ ତାକୁ କହିଲେ, ''ବୁଝିଲୁ ଲୋ ଚଢ଼େଇ, ସେ ରାଜକୁମାରୀଟି ଆଜି ବି ଆସିଥିଲା । ଆଜି ତ କାଲିଠାରୁ ବେଶି ସୁନ୍ଦର ଦେଖାଯାଉଥିଲା । ମୁଁ ତାକୁ ନିଶ୍ଚୟ ମୋ ଘରକୁ ବୋହୂ କରି ଆଣିବି । ଆଜି ସିପାହୀ ଦୁଇଟା ତା ପିଛା ଧରି ପାରିଲେ ନାହିଁ । କାଲିକି ତ ପୁଣି ଆସିବ; କାଲି ମୋ ପୁଅକୁ ଜଗାଇଥିବି ଯେ ସେ ନିଶ୍ଚୟ ତା ଘର ଠିକଣା ଜାଣିଦେବ ।''

ତୃତୀୟ ଦିନ ସମସ୍ତେ ଗୀର୍ଜାକୁ ଚାଲିଯିବାପରେ ମାରୁଦ୍ଧିଶା ସିନ୍ଦୁକରୁ ବାହାରି

ତାର ପୃଥିବୀ-ରଙ୍ଗର ସବୁଜ ପୋଷାକଟି ପିନ୍ଧିପକାଇଲା । ବେଶଭୂଷା ହୋଇ ପୋଷାକ ଭିତରେ ପୁଡ଼ିଆଏ ବାଲି ଧରି ସେ ପୁଣି ଗୀର୍ଜା ଭିତରେ ପଶି ରାଣୀମାଆଙ୍କ ପାଖରେ ଠିଆହୋଇ ପ୍ରାର୍ଥନାରେ ମଜ୍ଜିଗଲା । ତାର ସେ ମଧୁର ରୂପ ଦେଖି ରାଣୀମାଆଙ୍କ ଆଖି ଖୋସିହୋଇଗଲା । ସେ ମନେ ମନେ ସ୍ଥିର କରିନେଲେ ଯେ ଏହି ଝିଅଟି ଛଡ଼ା ତାଙ୍କ ନଅରକୁ ଅନ୍ୟ କେହି ବୋହୂହୋଇ ଆସିବ ନାହିଁ। ପ୍ରାର୍ଥନାରେ ସମସ୍ତେ ଆଖିବୁଜି ମଜ୍ଜିଯାଇଥାନ୍ତି । ଶେଷରେ ଆଖି ଖୋଲି ଚାହିଁବା ଲାଗି ପୁରୋହିତ କହିବା ପୂର୍ବରୁ ମାରୁଦ୍ଧିଶା ଚୁପ୍‌କିନା ଗୀର୍ଜାରୁ ପଳାଇଆସିଲା । ଗୀର୍ଜା ଫାଟକ ପାଖରେ ରାଜକୁମାର ଜଗିଥାନ୍ତି । ତାର ସେ ରୂପ ଓ ବେଶ ଦେଖି ସେ ଏପରି ମୁଗ୍‌ଧ ହୋଇଗଲେ ଯେ, କଣ କରିବେ କିଛି ସମୟଯାଏ ଠିକ୍ କରିପାରିଲେନାହିଁ। ଦେଖୁ ଦେଖୁ ମାରୁଦ୍ଧିଶା ଅନେକ ଦୂରକୁ ଚାଲିଗଲା । ଶେଷରେ ରାଜକୁମାର ମାଆଙ୍କ କଥା ମନେପକାଇ ତା ପଛରେ ଦୌଡ଼ିଲେ । ଦୌଡୁ ଦୌଡୁ ମାରୁଦ୍ଧିଶା ଯେତେବେଳେ ଦେଖିଲା ଯେ ରାଜକୁମାରଙ୍କୁ ଆଉ ଦୌଡ଼ରେ ପାରିହେବ ନାହିଁ, ସେ ଏତେ ପାଖକୁ ପଳାଇ ଆସିଲେଣି ଯେ ଆଉ ଟିକିଏ ପରେ ତାକୁ ଧରିପକାଇବେ, ସେତେବେଳେ ସେ ତା ପୋଷାକ ଭିତରୁ ବାଲି ପୁଡ଼ିଆଟି କାଢ଼ି ରାଜକୁମାରଙ୍କ ମୁହଁ ଉପରକୁ ଫୋପାଡ଼ିଦେଲା । ରାଜକୁମାରଙ୍କ ଆଖିରେ କେତେଟା ବାଲି ପଡ଼ିଯିବାରୁ ସେ ଆଉ ଦୌଡ଼ିନ ପାରି ମାରୁଦ୍ଧିଶାକୁ ଧରିବାଲାଗି ଚଟ୍‌କରି ହାତବଢ଼ାଇଦେଲେ । ମାରୁଦ୍ଧିଶା କିନ୍ତୁ ତାଙ୍କ ହାତ ଆଙ୍ଗୁଠିରୁ ମୁଦିଟିଏ ଟାଣିନେଇ ସେଠାରୁ ପଳାଇଗଲା । ରାଜକୁମାର ସେଠାରେ ବସି ଆଖି ସଫା କରୁ କରୁ, ସେ ଯାଇ ନଅର ଭିତରେ ଲୁଚିଗଲା । ରାଣୀମାଆ ଗୀର୍ଜାରୁ ଫେରିବାବେଳକୁ ସେ ତାର ସିନ୍ଦୁକ ଭିତରେ ପଶି ଉପରକୁ ମୁଣ୍ଡଟି ଟେକିଦେଇ ଚାହୁଁଛି । ରାଣୀମାଆ ଆସି ତାକୁ କହିଲେ, ''ଆଲୋ ଚଢ଼େଇ, କଣ ହେଲା ଶୁଣିଲୁଣି ?''

ମାରୁଦ୍ଧିଶା କହିଲା, ''ନାହିଁ ତ ମାଆ ! ଏଡ଼େ ବଡ଼ ଇଷ୍ଟର୍ ପର୍ବ ପଳାଇଲା, ମୋତେ ତ କେହି ଟିକିଏ ଗୀର୍ଜା ନେଲ ନାହିଁ। ମୁଁ କ'ଣ ଦେଖିପାରିଲି ନା ଶୁଣିପାରିଲି ।''

''ଆଲୋ, ସେ ରାଜକୁମାରୀଟି ଆଜି ବି ଗୀର୍ଜା ଆସିଥିଲା । ଠିକ୍ ବୋହୂଟିଏ ପରି କି ସୁନ୍ଦର ସବୁଜ ରଙ୍ଗର ପୋଷାକ ପିନ୍ଧି ବେଶଭୂଷା ହୋଇ ଆସିଥିଲା । ସେ ପୋଷାକରେ କେତେ ଯେ ଗଛଲତା ଫୁଲ ଫଳ ବୁଣାହୋଇଥିଲା, ସେ କଥା ଆଉ କଣ କହିବି ! ସତରେ ଭାରୀ ସୁନ୍ଦର ଦେଖାଯାଉଥିଲା । କିନ୍ତୁ ହେଲେ କଣ ହେବ, ମୋ ପୁଅ ବି ତା' ପିଛା ଧରି ପାରିଲା ନାହିଁ। ସେ ତା ଘରକୁ ଚାଲିଗଲା । ଏଇଲେ ମୋ ପୁଅ କଣ କହୁଛି, ଶୁଣିଲୁଣି ?''

''କଣ କହୁଛନ୍ତି ?''

''କହୁଛି, ସେ ଯଦି ବାହାହେବ ତେବେ ସେହି ରାଜକୁମାରୀକୁ ବାହା ହେବ, ନ ହେଲେ ମୋଟେ ବାହା ହେବ ନାହିଁ। ମୋ ପୁଅ ଏ ରାଜ୍ୟର ରାଜା । ସେ

ଯଦି ବାହାନହେବ, ଏ ରାଜ୍ୟର ରାଣୀ କିଏ ହେବ କହିଲୁ? ସେ ଝିଅଟିକୁ ପାଆନ୍ତି କି, ସବୁ ଅଡୁଆ ତୁଟିଯାଆନ୍ତା। ଆଲୋ, ତୁ କହିଲୁ; ପାଇବିଟି?''

ମାରୁଦ୍ଦିଶା କହିଲା, ''ପାଇବ ଗୋ ମାଆ, ପାଇବ। ରୋଇ ଜାଣିଲେ ଦାଇବ, ଆଉ ଖୋଜି ଜାଣିଲେ ପାଇବ।''

ସେଦିନ ସନ୍ଧ୍ୟାରେ ରାଜକୁମାର ମାଆଙ୍କ ପାଖକୁ ଆସି କହିଲେ, ''ମାମା, ମୁଁ ସେ ରାଜକୁମାରୀଙ୍କୁ ଖୋଜିବା ଲାଗି ଆମ ଦ୍ୱୀପର ଚାରିଆଡ଼େ ଚର ପଠାଇଥିଲି। କିନ୍ତୁ ଚରମାନେ ଆସି ଖବର ଦେଲେ ଆମ ଦ୍ୱୀପରେ ସେପରି ରାଜକୁମାରୀ କେହି ନାହାନ୍ତି। ସେ ନିଶ୍ଚୟ ଅନ୍ୟ କେଉଁ ଦ୍ୱୀପରୁ ଆସିଥିଲେ। ମୁଁ ଯାଉଛି, ଖଣ୍ଡିଏ ଜାହାଜ ନେଇ ଦ୍ୱୀପ ଦ୍ୱୀପ ବୁଲି ସେ ରାଜକୁମାରୀଙ୍କୁ ଖୋଜିବି। ତାଙ୍କୁ ନ ପାଇବାଯାଏଁ ମୁଁ ଘରକୁ ଫେରିବି ନାହିଁ।''

ରାଣୀମାଆ ଆଉ କଣ କରିବେ! ପୁଅ ଯିବ ବୋଲି ସେ ନଅର ଭିତରେ ଦାସୀ, ପୋଇଲୀ, ଗୁଡ଼ିଆ ମିସ୍ତ୍ରୀ ଲଗାଇ ନାନା ପ୍ରକାର ରହଣି ଖଜା ପିଠା ତିଆରି କରିବାକୁ ବରାଦ ଦେଇଦେଲେ। ସମସ୍ତେ ପିଠା ଗଢ଼ିବାରେ ଲାଗିଗଲେ। ଅଟା ମଇଦା ଚକୁଣି ହେଉଥାଏ, ପିଠା ତିଆରି ଚାଲିଥାଏ। ଶେଷକୁ ନାନା ପ୍ରକାର ମସଲା ଗୁଣ୍ଡ କରାଯାଇ ଦୁଧ, ଚିନି, ଖୁଆ ପଡ଼ି ଅଲଗାରେ ଚକୁଣି ତିଆରି କରାଗଲା; ରାଣୀମାଆ ସେଥିରେ ପୁଅ ପାଇଁ ନିଜେ ପିଠା ଗଢ଼ିବସିଲେ। ଏ ପିଠା ଗଢ଼ା ଦେଖି ସିନ୍ଦୁକ-ଚଢ଼େଇ ଓରଫ ମାରୁଦ୍ଦିଶା କହିଲା, ''ମାଆ, ମାଆ, ମତେ ଟିକିଏ ଚକୁଣି ଦିଅନ୍ତୁ, ମୁଁ ଗୋଟିଏ ପିଠା ଗଢ଼ିବି।''

ଚଢ଼େଇ ମୁହଁରୁ ଏକଥା ଶୁଣି ଦାସୀ ପୋଇଲୀଗୁଡ଼ାକ ହସିହସି ଗଡ଼ିଗଲେ। କହିଲେ, ''ଆଲୋ, ଏ ଚଢ଼େଇଟି କି ପିଠା ଗଢ଼ିବ କିଲୋ!'' ରାଣୀମାଆ ତାଙ୍କ ପାକୁଆ ପାଟିରେ ହସି ହସି କହିଲେ, ''ହଉ ଲୋ, ହଉ ତାକୁ ବି ମେଞ୍ଚେ ଚକୁଣି ଦିଅ। ସେ ବି ପିଠାଟିଏ ଗଢୁ।'' ଦାସୀମାନେ ତାକୁ ମେଞ୍ଚାଏ ଚକୁଣି ଦେଇ କହିଲେ, ''ଗଢ଼ିବୁ ଯଦି ଗଢ଼, ତୋ ପିଠା କିନ୍ତୁ ମଣିମାଙ୍କ ପିଠାରେ ମିଶିବ ନାହିଁ।''

ମାରୁଦ୍ଦିଶା ଚକୁଣି ନେଇ ସିନ୍ଦୁକ ଭିତରେ ପିଠା ଗଢୁ ଗଢୁ ତା ଭିତରେ ରାଜକୁମାରଙ୍କ ଆଙ୍ଗୁଠିରୁ ଟାଣିଆଣିଥିବା ମୁଦିଟି ପୂରେଇଦେଇ ଗଢ଼ି ଦେଲା। ସବୁ ପିଠା ଭଜା ସେକା ହେବା ପରେ ସିନ୍ଦୁକ-ଚଢ଼େଇର ପିଠାଟା ଭାଜି ରାଣୀମାଆ ଅଲଗାରେ କାଗଜ ଗୁଡ଼ାଇ ବାନ୍ଧିଦେଲେ। ଜାହାଜରେ ପିଲା ଭାର ବୋଝେଇ କରିବାବେଳେ ରାଣୀମାଆ ଟହଲିଆକୁ କହିଲେ, ''ହେଇଟି ରେ, ଏ ପିଠାଟି ଅଲଗାରେ ରଖିଥିବୁ। କୁମାରଙ୍କୁ ଖାଇବାକୁ ଦେଲାବେଳେ କହି କରି ଦେବୁ; କାଳେ ଯଦି ଖରାପ ଲାଗିବ, ମିଛଟାରେ ସେ ମୋ ଉପରେ ରାଗିବ।''

ରାଜକୁମାର ଜାହାଜ ନେଇ ଅନେକ ଦ୍ୱୀପ ବୁଲିଲେ, ଅନେକ ଆଡ଼େ ଖୋଜିଲେ; କିନ୍ତୁ କେଉଁଠି ହେଲେ ସେ ରାଜକୁମାରୀଙ୍କର ଦେଖା ପାଇଲେ ନାହିଁ। କ୍ରମେ ସେ ସାଙ୍ଗରେ ନେଇଥିବା ଖାଦ୍ୟ ପଦାର୍ଥ ସବୁ ଶେଷ ହୋଇ ଆସିଲା।

ଦିନେ ସେ ଟହଲିଆକୁ ଡାକି ପଚାରିଲେ, ‘‘ହଇରେ, ମାମା ଏତେ ପିଠା ଦେଇଥିଲେ, ସବୁ ସରିଗଲାଣି ?’’ ଟହଲିଆ କହିଲା, ‘‘ହଁ ମଣିମା; କେବଳ ସିନ୍ଦୁକ-ବଢ଼େଇ ଗଢ଼ିଥିବା ପିଠାଟି ଅଛି। ଛୋଟିଆଟିଏ ହୋଇଛି। ଛାମୁଁ ଚିଡ଼ିବେ ବୋଲି ଦେଉନାହିଁ।’’ ରାଜକୁମାର ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ‘‘ଏଁ! ସିନ୍ଦୁକ-ବଢ଼େଇ ପୁଣି ମୋ ପାଇଁ ପିଠା ଗଢ଼ି ଦେଇଛି!! କାହିଁ ଦେଖି ଆଣିଲୁ ଆଣିଲୁ, କିପରି ଲାଗୁଛି ଚାଖିବା।’’

ଟହଲିଆ ପିଠାଟି ବଢ଼େଇଦେଲା। ରାଜକୁମାର ଟିକିଏ ପିଠା ଚାଖି ଦେଖିଲେ ଖୁବ୍ ସୁଆଦ ହୋଇଛି। କିନ୍ତୁ ପିଠାଟି ଭାଙ୍ଗି ଦିଅନ୍ତି ତ ଦେଖିଲେ ସେ ଭିତରେ ତାଙ୍କ ହାତର ସେହି ମୁଦିଟି ରହିଛି; ଯେଉଁଟିକି ସେ ରାଜକୁମାରୀ ଟାଣିନେଇଥିଲା। ସେ ସଙ୍ଗେ ସଙ୍ଗେ ଭିତର ଗୁମର ସବୁ ବୁଝିଗଲେ; ଜାଣିଗଲେ ଯେ ସମସ୍ତେ ଯାହାକୁ ସିନ୍ଦୁକ-ବଢ଼େଇ ବୋଲି କହୁଛନ୍ତି, ସେ ନିଶ୍ଚୟ ସେହି ରାଜକୁମାରୀ। ଆଉ ବିଳମ୍ବ ନ କରି ସେ ଜାହାଜିଆମାନଙ୍କୁ ଜାହାଜ ଲେଉଟାଇବା ଲାଗି ଆଦେଶ ଦେଇଦେଲେ। ଦିନ କେଇଟା ଭିତରେ ଜାହାଜ ଆସି ଦେଶରେ ଲାଗିଗଲା। ଜାହାଜ ଫେରିଲା ଶୁଣି ରାଣୀମାଆ ଭାବିଲେ, ପୁଅ ବୋହୂକୁ ସାଙ୍ଗରେ ନେଇ ଆସିଛି। ସେ ଖୁସିରେ ଜାହାଜ ପାଖକୁ ଧାଇଁଆସି ଦେଖନ୍ତି ତ ପୁଅ ଏକୁଟିଆ ଆସିଛି। ଘଟଣା ଦେଖି ବୁଢ଼ୀ ଥକ୍କା ହୋଇଗଲେ; କିନ୍ତୁ ରାଜକୁମାର ହସି ହସି କହିଲେ, ‘‘ମାମା, ସେ ରାଜକୁମାରୀ ଆମରି ନଅର ଭିତରେ ଅଛନ୍ତି, ଆମେ ଖାଲି କସ୍ତୁରୀ-ମୃଗ କସ୍ତୁରି ଖୋଜି ବୁଲିଲା ପରି ତାଙ୍କୁ ଅନ୍ୟଆଡ଼େ ଖୋଜୁଛୁ।’’

ରାଣୀମାଆ ପଚାରିଲେ, ‘‘ଆମ ନଅରରେ ଅଛି ?’’ ‘‘ହଁ, ହଁ, ଆମରି ନଅରରେ।’’ କହି ରାଜକୁମାର ଜଣେ ବଢ଼େଇ ମିସ୍ତ୍ରୀକୁ ସାଙ୍ଗରେ ଧରି ଯାଇ ସିନ୍ଦୁକ-ବଢ଼େଇ ପାଖରେ ପହଞ୍ଚିଗଲେ। ମାରୁଦିଶା ସେତେବେଳକୁ ଲାଜରେ ଲୋଟାକୋଟା ହୋଇଗଲାଣି। ବଢ଼େଇ ତା କରତରେ ସିନ୍ଦୁକ କାଟିଲାଣି ଦେଖି ସେ ଭିତର ପଟୁ ସିନ୍ଦୁକ ଖୋଲି ବାହାରିଆସିଲା। ସେତେବେଳକୁ ସେ ସବୁଜ ରଙ୍ଗର ପୋଷାକଟି ପିନ୍ଧିଥାଏ। ରାଣୀମାଆ ତାକୁ ଦେଖିପକାଇ କହିଲେ, ‘‘ଆଲୋ, ହେଇଟିଲୋ ! ମୋ ବୋହୂ ଏ ଭିତରେ ଲୁଚିଛି !!’’

ସଙ୍ଗେ ସଙ୍ଗେ ବାଜା ବଜାଇ ବାଣ ଫୁଟାଇ ନାନା ଆଡ଼ମ୍ବରରେ ବାହାଘର କାମ ଆରମ୍ଭ କରିଦିଆଗଲା। ଅନେକ ଭୋଜିଭାତ ହେଲା। କିନ୍ତୁ ମୁଁ ଯାଇଥିଲି ଯେ ମୋତେ କେହି ଖାଇବାକୁ ଡାକିଲେ ନାହିଁ। ତୁମକୁ ଡାକିଥିଲେ ବୋଲି ଶୁଣିଲି।

## ହତଭାଗା

ଲେଫ୍‌ତେରିଶ୍ ଲୋକଟାର ଭାଗ୍ୟ ବଡ଼ ମନ୍ଦ। ଯେଉଁଥିରେ ହାତଦେଲା, ସେଥିରେ ଅମଙ୍ଗଳ ଘଟିଲା। ବାପ-ଅଜା ଅମଳରୁ ପାହାଡ଼ ତଳେ ତା'ର ଖଣ୍ଡେ

ପଦର ଜମି ଥିଲା । ଲେପ୍‌ତେରିଣ୍ ବିଚରା ସେ ଖଣ୍ଡିକ ଉଠିଆ କରି ସେଥିରେ ଅଙ୍ଗୁର ଚାଷକଲା । ଗଛଗୁଡ଼ାକ ଭଲ ବଢ଼ିଲା, ଫଳ ବି ଭଲ ଧରିଲା; କିନ୍ତୁ ଅଙ୍ଗୁର ପାଚିବାରୁ ଦେଖାଗଲା ସେଗୁଡ଼ାକ ଭୀଷଣ ଖଟା । ଚାଷରେ ବିଫଳ ହୋଇ ବିଚରା ଗାଈ ଛେଳି ବ୍ୟବସାୟ ଧରିଲା । କିନ୍ତୁ ଗୁହାଳରେ ଗାଈ ଛେଳି ବନ୍ଧା ହେଉ ହେଉ କ'ଣ ହେଲା କେଜାଣି, ସେଗୁଡ଼ାକର ପହ୍ନାସବୁ ଶୁଖିଗଲା । ପୁଣି କି ରୋଗ ଧରିଲା କେଜାଣି, ଛେଳିଗୁଡ଼ାକ ପଟାପଟ ମରିଗଲେ । ବାହାରର ଧନ୍ଦା ବ୍ୟବସାୟ ଇମିତି ଚାଲିଥାଏ, ତେଣେ ଭାର୍ଯ୍ୟା ବୋଲି ଯାହାକୁ ବିବାହ କରିଥାଏ, ସେ ଗୋଟିଏ ଖରତୁଣ୍ଡୀ । କୋମଳ ମଧୁର ବଚନ କ'ଣ ତା ପାଟି ତାହା ଜାଣେନା; ଦିନରାତି ଖାଲି ଟେଁ ଟେଁ କରୁଥାଏ । ଏହି ସବୁ କାରଣରୁ କଥା ପଡ଼ିଲେ ଲେପ୍‌ତେରିଣ୍ କହେ, "ଆରେ ଭାଇ, ମୋ ଭାଗ୍ୟ ଇମିତି ମନ୍ଦ ଯେ ଦୁନିଆରେ ମୋ ପରି ହତଭାଗା ଆଉ ନ ଥିବେ ।"

ସେ ସବୁବେଳେ ଏପରି ଭାଗ୍ୟ ନିନ୍ଦୁଥିବା ଦେଖି ଦିନେ ସକାଳେ ତା' ଭାର୍ଯ୍ୟା କହିଲା, "ଇମିତି ଘରେ ବସି ବ୍ୟସ୍ତ ହେଲେ କ'ଣ ହେବ ଯେ ? ଯାଉନା, ତୁମ ଭାଗ୍ୟସ୍ରୋତଟା ଠିକ୍ ବୋହୁଛି କି ନାହିଁ ଦେଖି ଆସିବ । ଯଦି ବୋହୁ ନ ଥିବ, ତେବେ କଣ କଲେ ପୁଣି ସେ ସ୍ରୋତଟା ବହିବ, ତାର କିଛି ବ୍ୟବସ୍ଥା କରିବ ।"

ଭାର୍ଯ୍ୟା କଥାଟା ଲେପ୍‌ତେରିଣ୍ ମନକୁ ଖୁବ୍ ପାଇଲା । ଭାବିଲା, "ଠିକ୍ କଥା, ଯାଉଛି ଏଇଲେ ଯାଇ ମୋ ଭାଗ୍ୟସ୍ରୋତଟା କେଉଁଠି କିପରି ବୋହୁଛି ଦେଖିଆସିବି ।" ଏହା ଭାବି ସେ ବାଟରେ ଜଳଖିଆ କରିବାଲାଗି ଦି'ଖଣ୍ଡ ରୁଟି ଧରି ଘରୁ ବାହାରିପଡ଼ିଲା । କିନ୍ତୁ ହାୟରେ ମନ୍ଦ ଭାଗ୍ୟ, ବିଚରା ଘରୁ ଗୋଡ଼ କାଢୁଛି, ଏ ସମୟରେ ଏରୁଣ୍ଡିବନ୍ଧଟା ଝୁଣ୍ଟିଦେଲା ଯେ ବୁଢ଼ା ଆଙ୍ଗୁଠିରୁ ଚେନାଏ ଉଡ଼ିଗଲା । କଣ ଆଉ କରିବ, ଖଣ୍ଡିଆ ଆଙ୍ଗୁଠିରେ ତେଲ ଟୋପେ ମାରିଦେଇ କନାପଟି ଖଣ୍ଡେ ବାନ୍ଧିଦେଲା ଏବଂ ପୁଣି ଭାଗ୍ୟସ୍ରୋତ ଖୋଜିବାକୁ ବାହାରିପଡ଼ିଲା । କିନ୍ତୁ ଯାଇ ଗାଆଁମୁଣ୍ଡରେ ହୋଇଛି କି ନାହିଁ, ହଠାତ୍ ଆକାଶରେ କଳାହାଣ୍ଡିଆ ମେଘ ଡାକିଦେଲା । ଯାହା ହେଲେ ପଛେ ହେବ, ଆଉ ଫେରିବ ନାହିଁ ଭାବି ଗାଆଁମୁଣ୍ଡ ତୋଟାରେ କେଉଁ ଗଛମୂଳେ ରହିଯିବ ବୋଲି ଧାଉଁଛି, ଏ ସମୟରେ ବର୍ଷା କଚିଦେଲା ଯେ ବିଚରା ଜୁଡୁବୁଡୁ ହୋଇ ଓଦା ହୋଇଗଲା । ଛିଙ୍କି, କାଶି, ଶୀତରେ ଥରିଥରି କୌଣସି ପ୍ରକାରେ ଗୋଟିଏ ଗଛମୂଳେ ଆଶ୍ରୟ ନେବାପରେ ବର୍ଷା ଛାଡ଼ିଗଲା । ପାଗ ଟିକିଏ ଭଲ ହେଲା ଦେଖି ସେମିତି ଓଦା ସରସର ହୋଇ ଭାଗ୍ୟସ୍ରୋତ ଖୋଜିବାକୁ ସେ ପୁଣି ବାହାରିପଡ଼ିଲା ।

ମନ୍ଦ ଭାଗ୍ୟଟା କାଳେ କେଉଁଠି ଲୁଚି ଲୁଚି ବୋହୁଥିବ ଭାବି ଲେପ୍‌ତେରିଣ୍ ଲଟାବୁଦା ପାହାଡ଼ ପଥର ଖୋଜି ଖୋଜି ଚାଲୁ ଚାଲୁ ଅନେକ ଦୂର ଚାଲିଗଲା । କିନ୍ତୁ କାହିଁ କେଉଁଠି ଭାଗ୍ୟସ୍ରୋତର ଦେଖା ନ ପାଇ ଶେଷରେ ଗୋଟାଏ ପାହାଡ଼ ତଳେ ଖଣ୍ଡିଏ ପଥର ଉପରେ ବସି ରୁଟି ଦୁଇଖଣ୍ଡ ଖାଇଦେଲା । ସେ ପାହାଡ଼ରୁ

ଗୁଡ଼ିଏ ଝରଣା ବୋହିଯାଉଥାଏ। ମୁନ୍ଦିଏ ପାଣି ପିଇବ ବୋଲି ସେ ପାହାଡ଼ ଉପରକୁ ଉଠୁ ଉଠୁ ଦେଖିଲା, ଗୋଟିଏ ଛୋଟ ଝରଣାରୁ ଟୋପେ ଟୋପେ ପାଣି ଝରିଆସି ଗୋଟିଏ ପଥର କୋରଡ଼ରେ ଜମିଛି। କୋରଡ଼ ମୁହଁରେ ଗୁଡ଼ାଏ ଦଳ ଓ ଶିଉଳି ଉଠିଥିବାରୁ ସେଥିରୁ ଆଉ ତଳକୁ ପାଣି ବୋହିଆସୁନଥାଏ। ଲେପ୍‌ଟେରିଶ୍ ଯାଇ ସେ କୋରଡ଼ରୁ ଆଞ୍ଜୁଳାଏ ପାଣି ପିଇ ଦେଉ ଦେଉ ପାଣିଟା ଟିକିଏ ଚହଲିଯିବାରୁ କୋରଡ଼ରୁ ମୁନ୍ଦିଏ ପାଣି ତଳକୁ ବୋହିଆସିଲା। ଝରଣାର ସେ ଶୁଖିଲା ରୂପ ଦେଖି ସେ କହିଲା, ‘‘ଏ ଝରଣାଟା ଠିକ୍ ମୋ ଭାଗ୍ୟ ପରି ହୋଇଛି। ମୁଁ ବଞ୍ଚି ଥାଉ ଥାଉ ବି ମଲାପରି ହୋଇଯାଇଛି, ଝରଣାଟି ସେପରି ଝରୁଥିଲେ ବି ଶୁଖିଆସିଲାଣି।’’ ଏ ସମୟରେ ସେ ଦେଖିଲା, ଝରଣାର ଉପରମୁଣ୍ଡରେ କ’ଣ ଧାଡ଼ିଏ ଲେଖା ହୋଇଛି। ପାଖକୁ ଯାଇ ସେ ଦେଖିଲା, ସେଠାରେ ଲେଖା ହୋଇଛି, ‘‘ଲେପ୍‌ଟେରିଶ୍‌ର ଭାଗ୍ୟସ୍ରୋତ।’’ ଲେଖାଟା ପଢ଼ି ଦେଉ ଦେଉ ତା’ପାଟିରୁ ବାହାରିପଡ଼ିଲା, ‘‘ଏଥିରେ ଆଉ ଅଛି କଣ ଯେ, ମୁଁ ବଦଳାଇବି ? ସତରେ, ମୋପରି ହତଭାଗା ଆଉ କେହି ନ ଥିବ।’’ ଏତିକିବେଳେ ସେ ଦେଖିଲା, ଖଣ୍ଡେ ଦୂରରେ ଆଉ ଗୋଟିଏ ଝରଣା ବୋହିଯାଉଛି। ସେ ଝରଣାର ସ୍ରୋତଟି ତା ଭାଗ୍ୟସ୍ରୋତଠାରୁ ପୂରାପୂରି ଭିନ୍ନ। ସେଥିରେ କୁଳୁକୁଳୁ ହୋଇ ପାଣି ବୋହିଯାଉଥାଏ ଏବଂ ତା’ଉପରେ ସୂର୍ଯ୍ୟକିରଣ ପଡ଼ି ଚିକ୍‌ଚିକ୍ କରୁଥାଏ। ଲେପ୍‌ଟେରିଶ୍ କହିଲା, ‘‘ଏକୁ ଯେ କହନ୍ତି ଭାଗ୍ୟସ୍ରୋତ!’’ ସତକୁ ସତ ସେ ଦେଖିଲା, ସେହି ଝରଣା ପାଖରେ ଲେଖା ହୋଇଛି, ‘‘ଏହା ରାଜାଙ୍କ ଭାଗ୍ୟସ୍ରୋତ।’’

ସତରେ ସେ ଦେଶ ରାଜାଙ୍କ ଭାଗ୍ୟ ଭାରୀ ଭଲ। ବାପ-ଅଜାଙ୍କ ଅମଳରୁ ଯେଉଁ ଛୋଟ ରାଜ୍ୟଟି ଥିଲା, ଏ ରାଜାଙ୍କ ଅମଳରେ ସେ ରାଜ୍ୟଟି ଯେ କେବଳ ବଢ଼ିଥାଏ ତା ନୁହେଁ, ତାର ଖୁବ୍ ଉନ୍ନତି ମଧ୍ୟ ଘଟିଥାଏ। ସେ ଗୋଟିଏ ଅଲିଭ୍ ବଗିଚା କରିଥାନ୍ତି ଯେ, ସେ ବଗିଚାର ଅଲିଭ୍‌ଗୁଡ଼ାକ ଦୁନିଆର ସବୁ ଅଲିଭ୍‌ଠାରୁ ବଡ଼ ବଡ଼। ରାଜାଙ୍କୁ ଚାହିଁ ତାଙ୍କ ରାଣୀ – ରୂପ ଯେମିତି, ଗୁଣ ସେମିତି। ସେ ଦିନେହେଲେ ସ୍ୱାମୀଙ୍କୁ ମୁହଁ ଟେକି ଉତର ଦେଇ ନାହାନ୍ତି; ସ୍ୱାମୀଙ୍କର ପଦେ କଥାକୁ ସେ କେଉଁ ଦିନ ତଳେ ପକାଇଦେଇନାହାନ୍ତି; ସ୍ୱାମୀଙ୍କୁ ଦେବତା ପରି ମାନନ୍ତି। ତଥାପି ରାଜା ଜଣ କହନ୍ତି ନା, ‘‘ମୋ ଭାଗ୍ୟ ସିନା ଏବେ ଭଲରେ ଚାଲିଛି; କିନ୍ତୁ କେବେ ଯଦି ଭାଗ୍ୟସ୍ରୋତ ଶୁଖିଯିବ, ତେବେ ଏ ସବୁ ସୁଖ କୁଆଡ଼େ ଉଭେଇଯିବ।’’

ରାଜାଙ୍କ ମୁହଁରୁ ଦୁଇ-ଚାରି ଥର ଏହି କଥା ଶୁଣି ରାଣୀଙ୍କୁ ବଡ଼ ଦୁଃଖ ଲାଗିଲା। ସେ ଦିନେ ରାଜାଙ୍କୁ କହିଲେ, ‘‘ଆହା, ମଣିମା ବୃଥାଟାରେ କାହିଁକି ଏପରି ଭୟକରୁଛନ୍ତି। ଥରେ ଯାଇ ଭାଗ୍ୟସ୍ରୋତଟି କିପରି ବହିଚାଲିଛି ଦେଖିଆସନ୍ତୁ ଯେ ମନରୁ ସବୁ ସଂଶୟ ତୁଟିଯିବ।’’ ରାଜା କହିଲେ, ‘‘ଠିକ୍ କହିଛ, ଆଜି ଯାଇ ଦେଖିଆସିବି।’’ ଫଳରେ ଲେପ୍‌ଟେରିଶ୍ ଯେଉଁ ଦିନ ତା’ ଭାଗ୍ୟସ୍ରୋତ

ଦେଖିବାକୁ ଆସିଥିଲା, ରାଜା ବି ସେଦିନ ତାଙ୍କ ଭାଗ୍ୟସ୍ରୋତ ଦେଖିବାକୁ ଆସିଥିଲେ । ପାହାଡ଼ ପାଖରେ ଦୁଇଜଣଙ୍କର ଦେଖାହେଲା । ରାଜାଙ୍କୁ ଦେଖୁ ଦେଖୁ ଲେଫ୍‌ତେରିଶ୍ ଦଣ୍ଡପ୍ରଣାମ କରି କହିଲା, ‘‘ମଣିମା, ସତରେ ଆପଣଙ୍କ ଭାଗ୍ୟସ୍ରୋତ ବଡ଼ ସୁନ୍ଦର ବୋହୁଛି; ଇମିତି ଭାଗ୍ୟ ଆଉ କାହାରି ନ ଥିବ ।’’

ରାଜା ଦେଖିଲେ ସେ ଲୋକଟି ଠିକ୍ କଥା କହିଛି । ସେ ତହୁଁ ପଚାରିଲେ, ‘‘ତୁ କିଏ ରେ ?’’ ଲେଫ୍‌ତେରିଶ୍ ନିଜର ପରିଚୟ ଦେଇ କହିଲା, ‘‘ମୁଁ ଗୋଟିଏ ହତଭାଗା ମଣିମା, ଦେଖୁନାହାନ୍ତି ମୋ ଭାଗ୍ୟସ୍ରୋତ କିପରି ହୋଇଛି ।’’

ରାଜା ତା ଭାଗ୍ୟସ୍ରୋତ ଦେଖି ବଡ଼ ଦୁଃଖକଲେ । ଭାବିଲେ, ‘‘ସତରେ ଜଣେ ଲୋକ ପାଖରେ ଏତେ ଧନସମ୍ପତ୍ତି ରହିଥିବାବେଳେ ଆଉ ଜଣେ ଏପରି ଗରିବ ହୋଇ ରହିବା ଅନ୍ୟାୟ । ଯାଉଛି, ମୁଁ ଏ ଲୋକଟାକୁ କିଛି ସାହାଯ୍ୟ ଦେଇ ଯାର ଭାଗ୍ୟ ବଦଳାଇଦେବି ।’’ ଏହା ଭାବି ସେ ଲେଫ୍‌ତେରିଶ୍‌କୁ କହିଲେ, ‘‘ଆରେ, ତୋ ରୂପଭେକ ବଡ଼ ଖରାପ ଦେଖାଯାଉଛି, ମୁହଁ ଶୁଖିଯାଇଛି । ମୋ ଘୋଡ଼ା ପଛରେ ବସ, ମୁଁ ତୋତେ ଆମ ନଅରକୁ ନେଇଯିବି; ଆମ ଘରେ ଅତିଥି ହୋଇ ଆସିବୁ ।’’

ଲେଫ୍‌ତେରିଶ୍ ମହା ଆନନ୍ଦରେ ଘୋଡ଼ାରେ ବସି ରାଜାଙ୍କ ନଅରକୁ ଚାଲିଗଲା । ସେତେବେଳକୁ ଅନ୍ଧାର ହୋଇଆସିଥାଏ । ରାଜା ତାକୁ ଭଲ ଲୁଗାପଟା ପିନ୍ଧିବାକୁ ଦେଇ କହିଲେ, ‘‘ରାତି ହୋଇଗଲା । ଆଉ ଘରକୁ ଯିବୁ କଣ । ଆମର ଏଠି ଖାଇପିଇ ରହିଯାଆ, ସକାଳେ ଚାଲିଯିବୁ ।’’ ଲେଫ୍‌ତେରିଶ୍ ରଜାଘରେ ଦିବ୍ୟ ଭୋଜନ ଖାଇ ଖୁସିରେ ଶୋଇପଡ଼ିଲା । ରାତି ନପାହୁଣୁ ରାଜା ତାଙ୍କ ରାନ୍ଧୁଣିଆକୁ ଡାକି କହିଲେ, ‘‘ଆମ ବତକ ଖୁଆଡ଼ରେ ଯେଉଁ ବଡ଼ ବତକଟି ଅଛି, ସେଇଟି ମାରି, କେଳେଇ ସେକାସେକି କରି ଆଣିଦେଲୁ ।’’

ରାଜାଙ୍କ ଆଦେଶ ପାଇ ରାନ୍ଧୁଣି ସେ ବତକ ମାରି, ତାର ପର ଛଡ଼ାଇ ନିଆଁରେ ସେକାସେକି କରି ଆଣିଦେଲା । ରାଜା ଲୁଚେଇ ସେ ବତକ ପେଟରେ ପେଟେ ସୁନା ମୋହର ଭରିଦେଲେ । ସକାଳୁ ଲେଫ୍‌ତେରିଶ୍‌କୁ ଡାକି କହିଲେ, ‘‘ଆରେ, ତୁ ସିନା ଆମ ନଅରରେ ଖାଇପିଇ ଚେଙ୍ଗା ହୋଇଗଲୁ, ହେଲେ ଘରେ ତୋ ଭାର୍ଯ୍ୟା ତେଣେ ଭୋକରେ ଥିବ । ଏ ବତକଟି ନେଇଯାଆ ଯେ ସ୍ୱାମୀ ସ୍ତ୍ରୀ ମିଶି ଖୁସିରେ ଖାଇବ ।’’

ଲେଫ୍‌ତେରିଶ୍ ବହୁ ଧନ୍ୟବାଦ ଦେଇ, ରାଜାଙ୍କଠାରୁ ବତକଟି ନେଇ ଗାଁକୁ ଯିବାକୁ ବାହାରିଲା । ବତକଟି କାନ୍ଧରେ ଝୁଲାଇଥାଏ । ଗୋଟିଏ ଗୋଟିଏ ଚାଲୁଚାଲୁ ଅଧବାଟ ଯାଇଛି କି ନାହିଁ ହାଲିଆ ହୋଇ ରାସ୍ତାକଡ଼ରେ ବିଶ୍ରାମ ନେବା ଲାଗି ବସିପଡ଼ିଲା । ସେ ବିଶ୍ରାମ ନେଉଛି, ସେହି ବାଟ ଦେଇ ଜଣେ ଛେଳି-ଜଗୁଆଳ ପଲେ ଛେଳି ନେଇ ଆସିଲା । ଲେଫ୍‌ତେରିଶ୍ ଛେଳିଙ୍କି ଚାହିଁଛି, ସେ ଛେଳି-ଜଗୁଆଳର ଦୃଷ୍ଟି ଯାଇ ତା' ବତକ ଉପରେ ପଡ଼ିଗଲା । ସେ ଲେଫ୍‌ତେରିଶ୍‌କୁ ପଚାରିଲା, ‘‘ଭାଲ ବତକଟିଏ ହୋଇଛି, କେତେରେ ବିକୁବୁ ?’’

ଲେଫ୍‌ତେରିଣ୍ ଭାବିଲା – ଭାଗ୍ୟ ହେବାକୁ ଯାଉନଥିଲେ ଏସବୁ ଘଟି ନଥାନ୍ତା। ରାଜା କାହିଁକି ନଅରକୁ କୁଣିଆ କରି ଡାକିଥାନ୍ତେ, ବତକଟାଏ ବା କାହିଁକି ଦିଅନ୍ତେ! ବତକଟା ଖାଇଦେଲେ ଓଳିକରେ ସରିଯିବ; କିନ୍ତୁ ବିକିଦେଲେ ଯଦି କିଛି ପଇସାପତ୍ର ମିଳିଯିବ, ତେବେ ସେଥିରେ ଚାରି ଓଳି ଚଳିଯାଇହେବ। ତେଣୁ ସେ କହିଲା, "ମୁଁ ତ ବିକିବାକୁ ନେଉନଥିଲି; ଖାବାକୁ ନେଉଥିଲି। ତୁ ଯଦି କିଣିବୁ ବୋଲି କହୁଛୁ, କେତେ ଦେବୁ କହ ?"

ଛେଳିଆଳ ତା' ହାତକୁ ପାଞ୍ଚଟି ଟଙ୍କା ବଢ଼ାଇ ଦେଇ ବତକଟା ନେଇଗଲା। ହାତରେ ପାଞ୍ଚଟଙ୍କା ପଡ଼ିଯିବାକ୍ଷଣି ଲେଫ୍‌ତେରିଣ୍ ଆଉ ମୁହଁ ନ ଫିଟାଇ ମନଖୁସିରେ ଗାଆଁକୁ ଚାଲିଆସିଲା। ଗାଆଁରେ ପହଞ୍ଚିବା ବେଳକୁ ମାଛି-ଅନ୍ଧାର ହୋଇଯାଇଥାଏ। ତା'ଘର ଆଗରେ ଛୋଟିଆ ନାଳଟିଏ ବୋହିଯାଉଥାଏ। ନାଳଟି ପାର ହେଲେ ଘରକୁ ଯିବ। ସେ ଅନ୍ଧକାରରେ ଚାଲିଛି। ସେତେବେଳେ ଦୁଇ ଦିନ ହେଲା ସ୍ୱାମୀ କୁଆଡ଼େ ଗଲେ ବୋଲି ତା ଭାର୍ଯ୍ୟା ଦୀପଟିଏ ଧରି ଦାଣ୍ଡଦୁଆରେ ଜଗିଛି। ଲେଫ୍‌ତେରିଣ୍ ଭାର୍ଯ୍ୟା ହାତରେ ଟଙ୍କା ପାଞ୍ଚଟା ଧରାଇ ଦେବ ବୋଲି ତରତର ହୋଇ ଆଗେଇଯିବା ବେଳକୁ ଗୋଡ଼ଟା ଖସିଗଲା ଯେ ବିଚରା ଭୁସ୍‌କିନା ସେ ନାଳ ଭିତରେ ଗଳିପଡ଼ିଲା। ନାଳରେ ସେତେବେଳକୁ ଅଣ୍ଟେ ପାଣି। ହତଭାଗା ବିଚରା ପାଣି-କାଦୁଅରେ ଉବୁଟୁବୁ ହୋଇ ଉପରକୁ ଉଠି ଆସିବା ବେଳକୁ ତା ହାତରୁ ଟଙ୍କା ପାଞ୍ଚଟା ସେ ପାଣିରେ ଖସିପଡ଼ିଲା।

ଅନ୍ଧାର ରାତିରେ ପାଣି କାଦୁଅ ଭିତରେ ପଶି ସ୍ୱାମୀ ସ୍ତ୍ରୀ ଅନେକ ଖୋଜିଲେ, କିନ୍ତୁ ସେ ଟଙ୍କା ଆଉ ମିଳିଲା ନାହିଁ। ବିଚରା କାନମୁଣ୍ଡା ଆଉଁସି ପୁଣି ଭାଗ୍ୟ ନିନ୍ଦିବାକୁ ଲାଗିଲା। ତେଣେ ଛେଳି-ଜଗୁଆଳ ଘରେ ତରକାରି କରିବା ଲାଗି ବତକଟା କାଟିଦିଅନ୍ତି ତ ସେ ଭିତରୁ ଝମ୍‌ଝାମ୍ ହୋଇ ସୁନା ମୋହରଗୁଡ଼ାକ କୁଢ଼େଇହୋଇଗଲା। ଆଃ! ସେଦିନ ତା' ଘରେ ଖୁସି ଦେଖେ କିଏ !!

# ସୂର୍ଯ୍ୟକୁମାର, ଚନ୍ଦ୍ରକୁମାର ଓ ରୋହିଣୀକୁମାରୀ

ବୁଢ଼ୀଟିଏ ଥାଏ। ତାର ତିନିଟି ଝିଅ। ମାଆଝିଅ ଚାରିପ୍ରାଣୀ କୁଟୁମ୍ବକୁ ଏଣେ ତାଙ୍କର ବାଡ଼ି ଗୋବରେ ଗୋବେ ଜମି ନଥାଏ। ଗରିବ ଲୋକ; ଖଟିଲା ଦିନ ଖାଆନ୍ତି, ନ ଖଟିଲା ଦିନ ଖାଡ଼ା ଖାଡ଼ା ଉପବାସ। ତଥାପି ଝିଅମାନଙ୍କ ବିବାହ ଲାଗି ବୁଢ଼ୀ ପଇସେଅଧଲେ କରି ସଞ୍ଚେ। ଝିଅ ତିନୋଟି ବଡ଼ହେଲେ। ରୂପର ଗୁଣର ହେଲେ। ଘର କାମଦାମକୁ ସେ ଆଖପାଖରେ ସେମାନଙ୍କ କାଟର ଝିଅ ଦେଖିବାକୁ ଅପୂର୍ବ ହେଲେ। ଯେ ଦେଖିଲା ସେ ସନ୍ତୁଷ୍ଟ ହେଲା; କିନ୍ତୁ ଦୁନିଆ ଲୋକେ ମୁହଁରେ ଯାହା କହନ୍ତି, କାମରେ ତାହା କରନ୍ତି ନାହିଁ। ଏତେ ପ୍ରଶଂସା କରି ବି ବିନା ଯୌତୁକରେ ସେ ଝିଅଙ୍କୁ ବିବାହ କରିବା ଲାଗି କେଉଁଠୁ ହେଲେ ବରଘର ଆସିଲାନାହିଁ। ଶେଷକୁ ବୁଢ଼ୀ ଝିଅଙ୍କ ଚିନ୍ତାରେ ଶୁଖି ଶୁଖି ମରିଗଲା।

ଝିଅ ତିନୋଟି ଏଥର ବାଟବଣା ଲୋକପରି ହୋଇଗଲେ। ତଥାପି କିପରି ବଞ୍ଚିବେ ବୋଲି ଭାବୁ ଭାବୁ ସେମାନଙ୍କୁ ଗୋଟିଏ ବାଟ ମିଳିଗଲା। ତାଙ୍କ ଘରେ କେତେ କାଳରୁ କେଜାଣି ତିନୋଟି ଚରଖା ପଡ଼ିଥାଏ। ଚରଖା ତିନୋଟି ମରାମତି କରି ତିନି ଭଉଣୀ ଦିନ ରାତି ବସି ସୂତା କାଟିଲେ। ସେହି ସୂତା ବିକି ଗୁଜୁରାଣ ମେଣ୍ଢାଇବା ସଙ୍ଗେ ସଙ୍ଗେ ନିଜ ନିଜ ବିବାହ ଯୌତୁକ ଲାଗି ଦି-ଦି ପଇସା ସଞ୍ଚୟ କରିବାକୁ ଲାଗିଲେ। କିନ୍ତୁ କିଛି ଦିନ ଯାଇଛି କି ନାହିଁ, ସେ ଦେଶରେ ତେଲ ଅଭାବ ପଡ଼ିଲା। ତେଲ ଅଭାବ ପଡ଼ିବାରୁ ତାର ବ୍ୟବହାରରେ କଟକଣା ଜାରିହୋଇଗଲା। ରାଜା ହୁକୁମ କରିଦେଲେ ଯେ ଦେଶରେ କେହିହେଲେ ରାତିରେ ଦୀପ ଜାଳିପାରିବେ ନାହିଁ। ଲୋକେ ଭାରି ହଇରାଣରେ ପଡ଼ିଲେ। କିନ୍ତୁ କଥାରେ ଅଛି ସ୍ୱର୍ଗକୁ ନିଶୁଣି ନାହିଁ କି ବଡ଼ଲୋକକୁ ଉତ୍ତର ନାହିଁ। ରାଜାଙ୍କ ଆଗରେ ଆପତ୍ତି ଅଭିଯୋଗ ନକରି ଲୋକ ମାଛିଅନ୍ଧାର ନ ହେଉଣୁ ରାତିକାମ ଶେଷ କରିଦେଇ ଦୁଆର କିଳି ଶୋଇଲେ। ଘଟଣା ଦେଖି ଏ ତିନି ଭଉଣୀଙ୍କ ଭିତରେ ଚିନ୍ତା ପଡ଼ିଗଲା। ବଡ଼ ଭଉଣୀ କହିଲା, ‘‘ରାଜାଙ୍କ ହୁକୁମ ମାନିଲେ ଆମେ ଆଉ ରାତିରେ ସୂତା କାଟି ପାରିବା ନାହିଁ।

ମଝିଆଁ ଭଉଣୀ କହିଲା, ‘‘ରାତିରେ ସୂତା ନ କାଟିଲେ ଦିନରେ ଏପରି କେତେ ସୂତା କାଟିବା ଯେ ଖାଇବା ଖର୍ଚ୍ଚ ତୁଲାଇ ଯୌତୁକ ଲାଗି ଦି' ପଇସା ସଞ୍ଚି ପାରିବା?’’ ସାନ ଭଉଣୀ କହିଲା, ‘‘ଯୌତୁକ ଲାଗି ଟଙ୍କା ପଇସା ନ ରଖିଲେ ବିନା ଯୌତୁକରେ ଆମକୁ କେହି ବାହା ହେବେ ନାହିଁ; ଆମେ ଏପରି ଅଭିଆଡ଼ୀ ହୋଇ ରହିଯିବା।’’

ଏପରି ଭାବି ତିନି ଭଉଣୀ ଶେଷରେ କହିଲେ, ‘‘ଆମ ଗରିବ ଘରକୁ କିଏ ସେ ଏବେ ରାତିରେ ଆସି ଦେଖୁଛି ଯେ ଆମର ଦୀପ ଜଳୁଛି କି ନାହିଁ ଜାଣିବ। ଦୁଆର ଝରକା କିଳି ଘର ଭିତରେ ଦୀପ ଜାଳି ସୂତା କାଟିବା।’’ ଏହା କହି ସେମାନେ ଦୁଆର ଝରକାରେ ଯେତେ ଯେଉଁଠି ଫାଙ୍କ ଥିଲା, ସବୁଥିରେ ମାଟି ଲେସି ରୁନ୍ଧିଦେଲେ ଏବଂ ରାତିରେ ଦୀପ ଜାଳି ସୂତା କାଟିଲେ। ଏଣେ ରାଜା ଚର ଲଗାଇ ଯେଉଁମାନେ ରାତିରେ ଦୀପ ଜାଳୁଥିଲେ ସେମାନଙ୍କୁ ଧରିଆଣି ଦଣ୍ଡ ଦେବାକୁ ଲାଗିଲେ। ଦିନକର କଥା, କିଏ କିଏ ରାତିରେ ଦୀପ ଜାଳୁଛନ୍ତି ଦେଖିବା ଲାଗି ନିଜେ ରାଜା ନଗର ବୁଲି ବାହାରିଲେ। ସାହି ବଜାର ଗଳିକନ୍ଦି ସବୁ ଆଡ଼େ ବୁଲି ଦେଖିଲେ। କେଉଁଠି କେହି ଜଣେ ହେଲେ ଦୀପ ଜାଳୁଥିବାର ଦେଖାଗଲା ନାହିଁ। ଲୋକେ ତାଙ୍କ ଆଦେଶ ଠିକ୍ ପାଳୁଛନ୍ତି ଭାବି ମନେ ମନେ ସନ୍ତୁଷ୍ଟ ହୋଇ ସେ ନଅରକୁ ଫେରୁଛନ୍ତି, ଦେଖିଲେ ଗୋଟିଏ ଘରର କବାଟରେ ଥିବା ଚାବି ଫୋଡ଼ବାଟେ ଧାରେ ଆଲୁଅ ଆସି ବାହାରେ ପଡ଼ିଛି। ସେଇଟି ଏହି ତିନି ଭଉଣୀଙ୍କ ଘର। ଘର ଭିତରେ ନିଶ୍ଚୟ ଦୀପ ଜଳୁଛି ଜାଣି ରାଜା ରାଗରେ ତମତମ ହୋଇ ସେ କବାଟ ପାଖକୁ ଚାଲିଆସନ୍ତି ତ ଶୁଣିଲେ ଭିତରେ ଚରଖା ଚାଲିବାର କେଁ କଟର କେଁ କଟର ଶବ୍ଦ ଶୁଭୁଛି। ସୂତା କଟା ଚାଲିଛି

ଭାବି ରାଜା କାନେଇଛନ୍ତି, ଶୁଣିଲେ ଘରଭିତରେ ତିନୋଟି ଝିଅ କଥା ହେଉଛନ୍ତି। ଜଣେ କହିଲା, "ଆହା, କି ମହରଗ ଯୁଗ ଆସିଲା ଯେ ଦିନରାତି କାମ କରି ବି ଦୁଇମୁଠା ଖାଇବାକୁ ମିଳୁନି। ମତେ ଭାରି ଭୋକ ହେଲାଣି; ମୁଁ ଯଦି ରାଜାଙ୍କ ପାଉଁରୁଟିଭାଟିବାଲାକୁ ବାହା ହୁଅନ୍ତି, ତେବେ ଯେତେ ଇଚ୍ଛା ସେତେ ରୁଟି ଖାଇବାକୁ ପାଆନ୍ତି।"

ଆଉ ଜଣେ କହିଲା, "ଅପା ଲୋ, ମତେ ବି ଭାରି ଭୋକ ହେଉଛି। କିନ୍ତୁ ଘରେ କଣ ଅଛି ଯେ ପାଟିରେ ପକାଇଦେବି! ମୁଁ ଯଦି ରାଜାଘର ରାନ୍ଧୁଣିଆକୁ ବାହା ହୁଅନ୍ତି, ତେବେ ମୁଁ ଯେମିତି ଖାନା ଚାହିଁଲେ ସେମିତି ଖାନା ଖାଆନ୍ତି।"

ଆଉ ଜଣେ ଝିଅ କହିଲା, "ନାନୀ ଲୋ, ମୋ ଭୋକ କଥା କହିଲେ ନସରେ। ସକାଳେ କଣ ଦିଇଟା ଖାଇଥିଲି ଯେ ସେତିକି। ଅଭାବ ତ ଛାଡ଼ିଲା ନାହିଁ, ଖାଇବା ପିଇବା କ'ଣ? ମୁଁ ଯଦି ରାଜାଙ୍କୁ ବାହା ହୁଅନ୍ତି, ମୋର ସବୁ ଅଭାବ ମେଣ୍ଟିଯାଆନ୍ତା।"

ବିଚରା ଗରିବ ଝିଅ ତିନୋଟି, ଦିନରାତି ସୂତା କାଟି କାଟି ବି ଖାଇବାକୁ ପାଉନାହାନ୍ତି ଦେଖି ରାଜା ଆଉ ଦଣ୍ଡ କଣ ଦେବେ, ଦୁଃଖରେ ନଅରକୁ ଫେରିଆସିଲେ। ତା' ପରଦିନ ସକାଳୁ ସେ ତିନି ଭଉଣୀଙ୍କୁ ନଅରକୁ ଡକାଇ ନେଇ ପେଟପୂରା ଖାଇବାକୁ ଦେଲେ। ସେମାନେ ଖାଇପିଇ ଆଶ୍ୱସ୍ତ ହେବାପରେ ରାଜା ବଡ଼ ଭଉଣୀକୁ ଡାକି ଏକାନ୍ତରେ ପଚାରିଲେ, "ଆଲୋ ଝିଅ, କାଲି ରାତିରେ ସୂତା କାଟି ବସିଥିବାବେଳେ ଭୋକ ହେବାରୁ ତୁ କଣ ସବୁ କହୁଥିଲୁ?"

ରାଜାଙ୍କଠାରୁ ଏ ପ୍ରଶ୍ନ ଶୁଣି ବଡ଼ ଭଉଣୀ ଭୟରେ ଥରିବାକୁ ଲାଗିଲା। ସେ ଡରିମରି କହିଲା, "ନା, ମଣିମା, ମୁଁ ସେମିତି କିଛି କହିନାହିଁ।"

ରାଜା କହିଲେ, "ମୁଁ ତୋର କିଛି କ୍ଷତି କରିବି ନାହିଁ; ଡରୁଛୁ କାହିଁକି? ସତ କଥା କହିଦେ।"

ବଡ଼ ଭଉଣୀ ବାଧ ହୋଇ କହିଲା, "କହୁଥିଲି, ଯଦି ରାଜାଘର ପାଉଁରୁଟି ଭାଟିବାଲାକୁ ମୁଁ ବାହା ହୁଅନ୍ତି, ତେବେ ଯେତେ ଇଚ୍ଛା ସେତେ ରୁଟି ଖାଇବାକୁ ପାଆନ୍ତି।" ରାଜା କହିଲେ, "ଭଲ କଥା। ତତେ ମୁଁ ମୋ ରୁଟିଭାଟିବାଲା ସହିତ ବିବାହ କରାଇଦେବି।" ସଙ୍ଗେ ସଙ୍ଗେ ରୁଟିଭାଟିବାଲାକୁ ଡକାଗଲା। ରାଜାଙ୍କଠାରୁ ବିବାହ ପ୍ରସ୍ତାବ ଶୁଣି ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲା।

ରାଜା ତା'ପରେ ମଝିଆ ଭଉଣୀକୁ ଡାକି ଏକାନ୍ତରେ ପଚାରିଲେ, "ଆଚ୍ଛା ଝିଅ, କାଲି ରାତିରେ ସୂତା କାଟିବାବେଳେ ଭୋକ ହେବାରୁ ତୁ କଣ ଇଚ୍ଛା କରୁଥିଲୁ?"

ଏ ପ୍ରଶ୍ନ ଶୁଣି ସେ ବିଚାରୀ ସରମରେ ମରିଯାଇ ମୁଣ୍ଡ ପୋତିଦେଲା। କହିଲା, "ନା, ମଣିମା, ସେ କିଛି ନୁହେଁ।" ରାଜା ତାକୁ ସାହସ ଦେଇ କହିଲେ, "ଲାଜ କରନି; ସତ କଥାଟି ଖୋଲି କହିଦେ।" ସେ ଶେଷକୁ ବାଧହୋଇ ସତ କହିଦେଲା, "ମୁଁ କହୁଥିଲି, ଯଦି ମଣିମାଙ୍କ ରାନ୍ଧୁଣିଆକୁ ବାହା ହୁଅନ୍ତି,

ତେବେ ଯେମିତି ଖାନା ଚାହିଁଲେ, ସେମିତି ଖାନା ପାଆନ୍ତି।''

ରାଜା କହିଲେ, ''ଠିକ୍ ଅଛି, ମୁଁ ତୋତେ ମୋ ରାନ୍ଧୁଣିଆ ସହିତ ବାହା କରାଇଦେଉଛି।'' ସଙ୍ଗେ ସଙ୍ଗେ ରାନ୍ଧୁଣିଆକୁ ଡକାଗଲା। ସେ ବିଚରା ବାହାଚୁଡ଼ା ହୋଇ ନଥାଏ। ଏଡ଼େ ସୁନ୍ଦର ଝିଅଟିକୁ ବାହା ହେବା କଥା ଉଠିବାରୁ ସେ ସଙ୍ଗେ ସଙ୍ଗେ ବିବାହରେ ରାଜି ହୋଇଗଲା।

ଶେଷରେ ରାଜା ସାନ ଭଉଣୀକୁ ଡାକିନେଇ ଏକାନ୍ତରେ ପଚାରିଲେ, ''ଆଚ୍ଛା, କାଲି ରାତିରେ ସୂତା କାଟୁ କାଟୁ ତୁମକୁ ଭୋକ ହେବାରୁ ତୁମେ କଣ ଇଚ୍ଛା କରୁଥିଲ ?'' ଖୋଦ୍ ରାଜାଙ୍କ ମୁହଁରୁ ଏଡ଼େ ବଡ଼ ପ୍ରଶ୍ନ ଶୁଣି ଝିଅଟି ଜିଭ କାମୁଡ଼ି ପକାଇଲା। କହିଲା, ''କ୍ଷମା କରନ୍ତୁ ମଣିମା, ମୋ ଛାର ପାଟିରେ ଏଡ଼େ ବଡ଼ କଥା ଲେଉଟିବ ନାହିଁ।''

ରାଜା କହିଲେ, ''ଡରନାହିଁ। ଯେତେ ବଡ଼କଥା ହେଉ ନା କାହିଁକି, ମୁଁ ତୁମ ଇଚ୍ଛା ପୂର୍ଣ୍ଣ କରିବାକୁ ଚେଷ୍ଟା କରିବି। ତୁମ ମନକଥାଟି ଖୋଲି କହିଦିଅ।'' ଶେଷକୁ ସାନ ଭଉଣୀ କହିଲା, ''ମଣିମା, ମୁଣ୍ଡ ରହିଲେ ତୁଣ୍ଡ କହିବ। ମୁଁ କହୁଥିଲି, ମୁଁ ଯଦି ମଣିମାଙ୍କୁ ବିବାହ କରନ୍ତି, ତେବେ ମୋର ସବୁ ଅଭାବ ମେଣ୍ଟିଯାଆନ୍ତା।''

ରାଜା ପଚାରିଲେ, ''ସତ କହୁଛ ?''

ସେ କହିଲା, ''ସତ କହୁଛି, ମଣିମା; ମୋର ଆଉ କୌଣସି ଅଭାବ ରହନ୍ତା ନାହିଁ। ମଣିମାଙ୍କୁ ବିବାହ କଲେ ମୁଁ ଏପରି ତିନୋଟି ପୁଅ ଝିଅ ଜନ୍ମ କରନ୍ତି ଯେ ଆଉ କେହି ସେମାନଙ୍କ ରୂପରେ ଗୁଣରେ ସରି ହୁଅନ୍ତା ନାହିଁ। ବଡ଼ଟି ହୁଅନ୍ତା ସୂର୍ଯ୍ୟଦେବତାଙ୍କ ପରି ତେଜୀୟାନ୍, ମଝିଆଁଟି ହୁଅନ୍ତା ଚନ୍ଦ୍ରଙ୍କ ପରି ସୁନ୍ଦର। ସାନଟି ହୁଅନ୍ତା ରୋହିଣୀ ତାରା ପରି ଉଜ୍ଜ୍ୱଳ ।''

ରାଜା ସନ୍ତୁଷ୍ଟ ହୋଇ ପଚାରିଲେ, ''ଏଭଳି ସନ୍ତାନମାନଙ୍କର ମାଆ ତୁମେ ହୋଇପାରିବ ତ ?''

''ନିଶ୍ଚୟ ପାରିବି ମଣିମା !''

''ତାହାହେଲ ମୁଁ ତୁମକୁ ବିବାହ କରିବି।'' କହି ରାଜା ଏକାଦିନକେ ତିନି ଭଉଣୀଙ୍କ ବିବାହ ଶେଷ କରିଦେଲେ। ବଡ଼ଭଉଣୀ ପାଉଁରୁଟିଭାଟିବାଲା ଘରକୁ ଚାଲିଗଲା। ମଝିଆଁ ଭଉଣୀ ରାନ୍ଧୁଣିଆର ସ୍ତ୍ରୀ ହୋଇଗଲା ଏବଂ ସାନଭଉଣୀ ରାଜାଙ୍କ ରାଣୀ ହୋଇ ନଅରରେ ରହିଲା। କିନ୍ତୁ ରାଜାଙ୍କର ମାଆ ବୁଢ଼ୀରାଣୀ ଏ ଗରିବଘର ଝିଅ ରାଣୀ ହୋଇ ରହିବା ଦିନୁ ତାକୁ ଦେଖିଲେ ନାକ ଟେକିଲେ। ତାକୁ ନଅରରୁ ତଡ଼ିଦେବାଲାଗି ସେ ନାନା ଫନ୍ଦି-ଫିକର ଆରମ୍ଭ କରିଦେଲେ। ତା' ନାଆଁରେ ବାର ଦିନରେ ତେର ଅଭିଯୋଗ ବାଢ଼ିବାକୁ ଲାଗିଲେ। ଯାହାହେଉ ରାଜା ସେଥିରୁ କୌଣସିଟା କାନରେ ପୂରାଇଲେ ନାହିଁ।

ଦିନ ରହେ ନାହିଁ। ଦେଖୁ ଦେଖୁ ନୂଆ ରାଣୀଙ୍କର ଗର୍ଭ ଉଦୟ ହେଲା। ସୂର୍ଯ୍ୟଙ୍କ ପରି ତେଜୀୟାନ୍ ପୁଅ ଦେଖିବା ଲାଗି ରାଜା ଦିନ ଗଣିବାକୁ ଲାଗିଲେ।

ଦଶମାସ ପୂର୍ଣ୍ଣ ହୋଇ ଆସୁଥାଏ । ଏ ସମୟରେ ରାଜ୍ୟ ସୀମାନ୍ତରେ ଗୋଟିଏ ଯୁଦ୍ଧ ଲାଗିଗଲା ଯେ ରାଜା ବାଧହୋଇ ଯୁଦ୍ଧଭୂଇଁକୁ ଚାଲିଗଲେ । ଗଲାବେଳେ ମାଆଙ୍କୁ କହିଗଲେ, "ମାଆ, ମୁଁ ଯୁଦ୍ଧକୁ ଯାଉଛି, ତୁମେ ମୋ ରାଣୀଙ୍କୁ ଆଦର ଯତ୍ନରେ ରଖିଥିବ । ତା'ର ଏ ଗର୍ଭରେ ସୂର୍ଯ୍ୟଙ୍କ ପରି ତେଜୀୟାନ୍ ପୁଅ ଜନ୍ମ ହେବ । ଦେଖିବ, ତା'ର ଯେପରି କୌଣସି ଅସୁବିଧା ନହୁଏ ।"

ବୁଢ଼ୀରାଣୀ ମନେ ମନେ ଖୁସି ହୋଇ କହିଲେ, "ନାହିଁରେ, ତୁ ବ୍ୟସ୍ତ ହୁଅନା; ମୁଁ ଥାଉ ଥାଉ ଅସୁବିଧା କରାଇଦେବି ! ତୁ ଯାଆ, ଯୁଦ୍ଧ ଜୟ କରି ଆସ ।"

ରାଜା ଯୁଦ୍ଧକୁ ଚାଲିଗଲେ ଏବଂ ଯେଉଁ ଶାଶୁବୁଢ଼ୀ ତାଙ୍କୁ ଆଡ଼ଆଖିରେ ବି ଚାହାନ୍ତି ନାହିଁ, ରାଣୀଙ୍କୁ ଏବେ ସେହି ଶାଶୁବୁଢ଼ୀଙ୍କ ଦାୟିତ୍ୱରେ ରହିବାକୁ ପଡ଼ିଲା । ସେ ଯେତେବେଳେ ପ୍ରସବ ବେଦନା ପାଇଲେ, ବୁଢ଼ୀରାଣୀ ସେତେବେଳେ ତାଙ୍କ ପାଖ ମାଡ଼ିଲେ ନାହିଁ । ତଥାପି ସତରେ ସେ ସୂର୍ଯ୍ୟଙ୍କ ପରି ତେଜୀୟାନ୍ ପୁଅଟିଏ ଜନ୍ମ କଲେ । ବୋହୂ ତେଣେ ସନ୍ତାନ ପ୍ରସବ କରିସାରି ବେହୋସ ହୋଇ ପଡ଼ିଥାନ୍ତି, ବୁଢ଼ୀରାଣୀ ଏଣେ ପୁଅଟିକୁ ନେଇ ଗୋଟିଏ କାଠ ସିନ୍ଦୁକରେ ଭରି ସମୁଦ୍ରରେ ଭସାଇଦେଲେ ଏବଂ ସେ ପୁଅ ସ୍ଥାନରେ ଗୋଟିଏ କୁକୁରଛୁଆ ଆଣି ଶୁଆଇଦେଲେ । ରାଜା ଯୁଦ୍ଧରୁ ଫେରିବା ମାତ୍ରେ ମାଆଙ୍କୁ ପଚାରିଲେ, "ମାମା, ମୋ ପୁଅଟି କିପରି ହୋଇଛି ?"

ବୁଢ଼ୀରାଣୀ ମୁହଁ ମୋଡ଼ି ଦେଇ କହିଲେ, "ଛିଆ ଛିଆ ଲୋ ! କି ପୁଅ କିରେ ? କୁକୁରଛୁଆଟେ ପରା ଜନ୍ମ କରିଛି ।"

ରାଜା ବିସ୍ମିତ ହୋଇ ଅନ୍ତୁଡ଼ିଶାଳକୁ ପଶିଗଲେ । ଦେଖିଲେ ମାଆଙ୍କ କଥା ଠିକ୍ । ତଥାପି ରାଣୀଙ୍କର ନିରୀହ ମୁହଁଟି ଦେଖି ଦେଉ ଦେଉ ତାଙ୍କର ହୃଦୟ ତରଳିଗଲା । ସେ ତାଙ୍କୁ କୌଣସି ଦୋଷ ଦେଇ ପାରିଲେ ନାହିଁ । ବୁଢ଼ୀରାଣୀ ତେଣେ ରାଗରେ ରକ୍ତଚାଉଳ ଚୋବାଉଥାନ୍ତି, ରାଜା ରାଣୀଙ୍କୁ ଧରି ହସଖୁସିରେ ପୁଣି ରାଜକାର୍ଯ୍ୟରେ ମନ ଦେଲେ । କିଛିଦିନ ପରେ ରାଣୀଙ୍କର ପୁଣି ଥରେ ଗର୍ଭ ଉଦୟ ହେଲା । କିନ୍ତୁ ଦଶମାସ ଗର୍ଭ ହୋଇ ସେ ପ୍ରସବବେଦନା ପାଇବାବେଳକୁ ରାଜ୍ୟ ସୀମାନ୍ତରେ ପୁଣି ଯୁଦ୍ଧ ଡାକରା ପଡ଼ିଲା । ରାଜା ବାଧହୋଇ ମାଆଙ୍କ ଦାୟିତ୍ୱରେ ରାଣୀଙ୍କୁ ଛାଡ଼ିଦେଇ ପୁଣି ଯୁଦ୍ଧକ୍ଷେତ୍ରକୁ ଚାଲିଗଲେ । ଗଲାବେଳେ ମାଆଙ୍କୁ କହିଗଲେ, "ମାମା, ମୁଁ ଯୁଦ୍ଧକୁ ଚାଲିଲି, ରାଣୀଙ୍କର ଯତ୍ନ ନେଇ ପ୍ରସବ କାମଟି ସୁରୁଖୁରୁରେ କରାଇଦେବ । ଏଥର ସେ ଚନ୍ଦ୍ରଙ୍କ ପରି ପୁଅଟିଏ ଜନ୍ମ କରିବ; ଦେଖିବ ତା'ର ଯେପରି କୌଣସି 'ଅସୁବିଧା ନହୁଏ ।"

ବୁଢ଼ୀ କହିଲେ, "ହଁ ବାପା, ତୁ ନିଶ୍ଚିନ୍ତରେ ଯାଆ । ମୁଁ ସକଳ ବ୍ୟବସ୍ଥା କରିଦେବି ।"

ରାଜା ଚାଲିଗଲେ ଏବଂ ଦୁଇଦିନ ପରେ ସତକୁ ସତ ରାଣୀଙ୍କର ଚନ୍ଦ୍ରପରି ସୁନ୍ଦର ପୁଅଟିଏ ଜନ୍ମ ହେଲା । କିନ୍ତୁ ପୁଅଟି ଗର୍ଭରୁ ତଳେ ପଡ଼ିବାମାତ୍ରେ ବୁଢ଼ୀ

ରାଣୀ ତାକୁ ନେଇ ଆଗ ଥର ପରି ଗୋଟିଏ କାଠ ସିନ୍ଦୁକରେ ପୂରାଇ ସମୁଦ୍ରରେ ଭସାଇ ଦେଲେ ଏବଂ ଆଗରୁ ଠିକ୍ କରି ରଖିଥିବା ଗୋଟିଏ କଳା ବିରାଡ଼ିଛୁଆ ଆଣି ରାଣୀଙ୍କ କୋଳରେ ଶୁଆଇ ଦେଲେ । ରାଣୀ ତ ଅଚେତ ହୋଇ ପଡ଼ିଥାନ୍ତି, ସେ କାହିଁକି ଏତେ କଥା ଜାଣିବେ ? ରାଜା ଯୁଦ୍ଧକ୍ଷେତ୍ରରୁ ଫେରୁ ଫେରୁ ମାଆଙ୍କୁ ପଚାରିଲେ, ''ମାମା, ଏଥର ମୋ ପୁଅଟି କିପରି ହୋଇଛି ?''

ବୁଢ଼ୀରାଣୀ ମୁହଁ ମୋଡ଼ିଦେଇ କହିଲେ, ''ବାପା, ମୋତେ ଆଉ ପଚାରନି, ତୁ ନିଜେ ଯାଇ ଦେଖି ଆସ । କଳା ବିରାଡ଼ିଛୁଆଟେ ପରା ଜନ୍ମ କରିଛି !''

ରାଜା ବ୍ୟସ୍ତହୋଇ ଅନ୍ତୁଡ଼ିଶାଳକୁ ଯାଇ ଦେଖିଲେ ମାଆଙ୍କ କଥା ଠିକ୍ । ତାଙ୍କ ମନ ଦୁଃଖରେ ଭରିଗଲା । ରାଜାଙ୍କୁ ଦେଖି ରାଣୀ ଲାଜ-ଅପମାନରେ ମୁହଁ ଲୁଚାଇ ନେଲେ । କିନ୍ତୁ ତାଙ୍କର ସେ ସରଳ ସୁନ୍ଦର ନିରୀହ ମୁହଁ ଦେଖି ରାଜାଙ୍କର ସବୁ ଦୁଃଖ ପାଶୋର ହୋଇଗଲା । ରାଣୀଙ୍କ ପ୍ରତି ରାଜାଙ୍କର କୌଣସି ଆଦର ଯତ୍ନ କମିଲା ନାହିଁ ଦେଖି ବୁଢ଼ୀରାଣୀ ମନେ ମନେ ରକ୍ତ-ଚାଉଳ ଚୋବାଇହେଲେ । ଏପରି ବର୍ଷଟିଏ ବିତିଯିବା ବେଳକୁ ରାଣୀଙ୍କର ପୁଣି ଗର୍ଭବେଦନା ଆରମ୍ଭ ହୋଇଗଲା । ସେ ଗର୍ଭବେଦନାରେ ଛଟପଟ ହେଉଛନ୍ତି, ଏ ସମୟରେ ଖବର ଆସିଲା ଯେ ରାଜ୍ୟ ସୀମାନ୍ତ ଅଞ୍ଚଳରେ ପୁଣି ଯୁଦ୍ଧ ଆରମ୍ଭ ହୋଇଯାଇଛି । ରାଜା ବାଧହୋଇ ଯୁଦ୍ଧକ୍ଷେତ୍ରକୁ ବାହାରିଲେ । ଯିବା ପୂର୍ବରୁ ମାଆଙ୍କୁ ଡାକି କହିଲେ, ''ମାମା, ରାଣୀ ଏଥର ରୋହିଣୀ ପରି ଉଜ୍ଜ୍ୱଳ ଝିଅଟିଏ ଜନ୍ମ କରିବେ । ସେ ଗର୍ଭବେଦନା ପାଉଛନ୍ତି; ଦେଖିବ, ଯେପରି କିଛି ଅସୁବିଧା ନହୁଏ ।''

ବୁଢ଼ୀ ମନେ ମନେ ଖୁସି ହୋଇ କହିଲେ, ''ତୁ ଆଗ ଯାଇ ଶତ୍ରୁ ନିପାତ କରି ଆସ । ମୁଁ ଏଣେ ମୋ କାମ ତୁଲେଇଦେବି ।''

ମାଆଙ୍କ ଉପରେ ଆସ୍ଥା ରଖି ରାଜା ଯୁଦ୍ଧକୁ ଚାଲିଗଲେ ଏବଂ ସେହି ଦିନ ପାହାନ୍ତିଆକୁ ରାଣୀ ସତରେ ରୋହିଣୀ ନକ୍ଷତ୍ର ପରି ତେଜୀୟାନ୍ ଝିଅଟିଏ ଜନ୍ମ କଲେ । ଏଡ଼ିକି ସୁନ୍ଦର ଝିଅ ହୋଇଥାଏ ଯେ ଶତ୍ରୁ ହେଲେ ବି ଦଣ୍ଡେ ଠିଆହୋଇ ଚାହିଁବ; କିନ୍ତୁ ସେ ବୁଢ଼ୀରାଣୀ ଜଗତରୁ ବାହାର । ରାଣୀ ତେଣେ ବେହୋସ ହୋଇ ପଡ଼ିଥାନ୍ତି । ବୁଢ଼ୀ ଝିଅଟିକୁ ନେଇ ସିନ୍ଦୁକରେ ପୂରାଇ ଆଗପରି ସମୁଦ୍ରରେ ଭସାଇଦେଲେ ଏବଂ ଅନ୍ତୁଡ଼ିଶାଳରେ ରାଣୀଙ୍କ ପାଖରେ ଗୋଟିଏ କଳା ସାପ ଆଣି ଶୁଆଇଦେଲେ । ଠିକ୍ ସେତିକି ବେଳକୁ ରାଜା ଯୁଦ୍ଧରୁ ଫେରି ମାଆଙ୍କୁ ପଚାରିଲେ, ''ମାମା, ମୋ ଝିଅଟି କିପରି ହୋଇଛି ?''

ବୁଢ଼ୀରାଣୀ କହିଦେଲେ, ''ବାପା, କି ମାଗିଖିଆ ଘରୁ ଝିଅ ଆଣି ବିବାହ କଲୁ; କେଜାଣି, ଏଥର କଳା ସାପଟାଏ ଜନ୍ମ କରିଛି ।''

ରାଜାଙ୍କ ଦେହରେ ନିଆଁ ଲାଗିଗଲା । ସେ ଅନ୍ତୁଡ଼ିଶାଳକୁ ଦୌଡ଼ିଯାଇ ଦେଖନ୍ତି ତ ତାଙ୍କ ମାଆ କିଛି ମିଛ କହିନାହାନ୍ତି । ସେ ସେହି ମୁହୂର୍ତ୍ତରେ କହିଦେଲେ, ''ନା, ଆଉ ଏ ରାଣୀର ମୁହଁ ଚାହିଁବା ଉଚିତ ନୁହେଁ । ଆକୁ ନେଇ ଗୋଟାଏ ଅମୁହାଁ ଘରେ ରଖିଦିଅ ।'' ସେହି ଦିନଠାରୁ ରାଣୀଙ୍କୁ ଅମୁହାଁ ଘରେ ବନ୍ଦୀ କରି

ରଖିଦିଆଗଲା । ଏତେ ଦିନକେ ତାଙ୍କର ମନସ୍କାମନା ପୂର୍ଣ୍ଣହେଲା ଦେଖି ବୁଢ଼ୀରାଣୀ ଦିଅଁଦେବତାଙ୍କୁ ଅନେକ ଭୋଗ ଚଢ଼େଇଲେ । କିନ୍ତୁ କଥାରେ ଅଛି "ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ?"

ବୁଢ଼ୀରାଣୀ ସିନା ପ୍ରକାରେ କଲେ; ଘଟଣା ତେଣେ ଆଉ ପ୍ରକାରେ ହୋଇଗଲା । ସେ ଯେଉଁ କାଠ ସିନ୍ଦୁକରେ ଛୁଆଟିକୁ ପୂରାଇ ସମୁଦ୍ରରେ ଭସାଇ ଦିଅନ୍ତି, ସେ ସିନ୍ଦୁକ ସମୁଦ୍ର ଲହରି ଧକ୍କା ଖାଇ ଭାସି ଭାସି ଯାଇ ଆଉ ଗୋଟିଏ କୂଳରେ ଲାଗିଯାଏ । ସେ କୂଳରେ ଜଣେ ସିଦ୍ଧପୁରୁଷ ରହନ୍ତି । ଏକାଟିଆ ଲୋକ । ପ୍ରତିଦିନ ସକାଳୁ ଉଠି ସେ ସମୁଦ୍ରରୁ ମାଛଟିଏ ଧରନ୍ତି; ସେହି ଗୋଟିଏ ମାଛରେ ତାଙ୍କ ଦିନକର ଆହାର ଚଳିଯାଏ । ତାଙ୍କ ମନ ଜାଣି ପ୍ରଭୁ ବି ତାଙ୍କ ଜାଲରେ ମାତ୍ର ଗୋଟିଏ ହିଁ ମାଛ ପକାନ୍ତି । ଦିନେ ସକାଳେ ସେ ପ୍ରଭୁଙ୍କୁ ଧ୍ୟାନ କରି ସମୁଦ୍ରରେ ଜାଲ ପକାଇ ଦିଅନ୍ତି ତ, ଜାଲରେ ଦୁଇଟି ମାଛ ପଡ଼ିଗଲା । ଦୁଇଟି ମାଛ ଦେଖି ସେ ହାତ ଯୋଡ଼ି ପ୍ରଭୁଙ୍କୁ ଜଣାଇଲେ, "ହେ ପ୍ରଭୁ, ମୋର ତ ଗୋଟିଏ ମାଛ ଯଥେଷ୍ଟ; ମୋତେ ବୃଥାରେ କାହିଁକି ଦୁଇଟି ମାଛ ଦେଲ ?" ଯାହାହେଉ ସେ ମାଛ ଦୁଇଟି ନେଇ ନିଜ କୁଡ଼ିଆକୁ ଫେରୁଛନ୍ତି, ଦେଖିଲେ ଗୋଟିଏ କାଠ ସିନ୍ଦୁକ ଆସି କୂଳରେ ଲାଗିଛି । ସେ ଯାଇ ସିନ୍ଦୁକଟି ଖୋଲିଦିଅନ୍ତି ତ ଦେଖିଲେ, ସେ ଭିତରେ ସୁସ୍ଥ ସବଳ ଛୁଆଟିଏ ଶୋଇଛି, ତା'ଦେହରୁ ସୂର୍ଯ୍ୟଙ୍କ ପରି ତେଜ ବାହାରୁଛି । ସିଦ୍ଧପୁରୁଷ ଅତି ଆଦରରେ ସେ ଛୁଆଟିକୁ କୋଳକୁ ନେଉ ନେଉ ପ୍ରଭୁଙ୍କୁ ଧନ୍ୟବାଦ ଦେଇ କହିଲେ, "ମୁଁ କଣ ଏତେ କଥା ଜାଣିଥିଲି ପ୍ରଭୁ ! ମୋ ଘରକୁ ଅତିଥିଟିଏ ପଠାଇଛ, ସେଥିପାଇଁ ଆଜି ମୋ ଜାଲରେ ଦୁଇଟି ମାଛ ପକାଇଦେଇଛ । ଧନ୍ୟ, ଧନ୍ୟ ତୁମର ମହିମା !!"

ଏ ଛୁଆଟି ଯେ କିଏ, ସେ କଥା ନ କହିଲେ ଚଳିବ । ତା ରୂପ ଓ ତେଜରେ ମୁଗ୍ଧ ହୋଇ ସିଦ୍ଧପୁରୁଷ ତାକୁ ସୂର୍ଯ୍ୟକୁମାର ବୋଲି ନାଆଁ ଦେଇଦେଲେ । ଏଥର ତାଙ୍କ ଜାଲରେ ପ୍ରତିଦିନ ଦୁଇଟି କରି ମାଛ ପଡ଼ିଲା । ସେ ଅତି ଆଦରରେ ସୂର୍ଯ୍ୟକୁମାରର ଲାଳନପାଳନ କରିଚାଲିଥାନ୍ତି, ଠିକ୍ ତାର ବର୍ଷକ ପରେ ସେ ମାଛ ଧରିବା ଲାଗି ସମୁଦ୍ରରେ ଜାଲ ପକାଇ ଟାଣି ଆଣନ୍ତି ତ ଦେଖିଲେ ସେଥିରେ ତିନୋଟି ମାଛ ପଡ଼ିଛି । ସେ ଦୁଃଖିତ ହୋଇ ପ୍ରଭୁଙ୍କୁ ଜଣାଇଲେ, "ପ୍ରଭୁ, ମୋର ତ ଦୁଇଟି ମାଛ ଯଥେଷ୍ଟ; ବୃଥାରେ କାହିଁକି ଆଉ ଗୋଟିଏ ମାଛ ଦେଇଦେଲ !"

ଯାହାହେଉ ସେ ମାଛ ତିନୋଟି ଧରି କୁଡ଼ିଆକୁ ଫେରୁଛନ୍ତି, ଦେଖିଲେ ଗୋଟିଏ କାଠ ସିନ୍ଦୁକ ଆସି କୂଳରେ ଲାଗିଛି । ପୁଣି ଗୋଟିଏ କାଠ ସିନ୍ଦୁକ କେଉଁଠୁ ଆସି ଲାଗିଲା ବୋଲି ସେ ସିନ୍ଦୁକଟିକୁ ଖୋଲିଦିଅନ୍ତି ତ ତା' ଭିତରେ ଚନ୍ଦ୍ରଙ୍କ ପରି ସୁନ୍ଦର ଛୁଆଟିଏ କୁଆଁ କୁଆଁ ହୋଇ କାନ୍ଦୁଛି । "ପ୍ରଭୁ ତା'ହେଲେ ମୋ କୁଡ଼ିଆକୁ ଆଉ ଜଣେ ଅତିଥି ପଠାଇ ଦେଇଛନ୍ତି ! ସେଇଥିପାଇଁ ଆଜି ଅଧିକ ମାଛଟିଏ ଦେଇଛନ୍ତି । ଧନ୍ୟ ତୁମ ମହିମା !!" କହି ସିଦ୍ଧପୁରୁଷ ସେ ଛୁଆଟି ନେଇ କୁଡ଼ିଆରେ ପାଳିଲେ । ତା'ର ଚନ୍ଦ୍ରସୁନ୍ଦର ରୂପ ଦେଖି ତାକୁ ନାଆଁ ଦେଲେ

ଚନ୍ଦ୍ରକୁମାର। ପୁଅ ଦୁଇଟି ଖାଇପିଇ ହସି ଖେଳି କୁଡ଼ିଆରେ ବଢ଼ିଚାଲିଲେ।

ସୂର୍ଯ୍ୟକୁମାର ଓ ଚନ୍ଦ୍ରକୁମାର ଏପରି ବଢ଼ିଚାଲିବାର ବର୍ଷକ ପରେ ଦିନେ ସିଦ୍ଧପୁରୁଷଙ୍କ ଜାଲରେ ଚାରିଟି ମାଛ ପଡ଼ିଗଲା। ସେ ବିସ୍ମୟରେ କହିପକାଇଲେ, "ପ୍ରଭୁ, ଏତେଦିନ ତ ମୋତେ ତିନୋଟି କରି ମାଛ ଦେଉଥିଲ, ମୁଁ ସେଥିରେ ବେଶ୍ ଚଳିଯାଉଥିଲି, ଆଜି ବୃଥାରେ ଆହୁରି ଗୋଟିଏ ମାଛ କାହିଁକି ଦେଲ!" ଏପରି କହି ସେ ମାଛ ଚାରିଟି ଧରି କୁଡ଼ିଆକୁ ଫେରୁଛନ୍ତି ସମୁଦ୍ରକୂଳରେ ଆଉ ଗୋଟିଏ କାଠ ସିନ୍ଦୁକ ଲାଗିଥିବାର ଦେଖିଲେ। ସେ ଯାଇ ସିନ୍ଦୁକଟି ଖୋଲିଦିଅନ୍ତି ତ ସେ ଭିତରେ ରୋହିଣୀ ନକ୍ଷତ୍ର ପରି ଉଜ୍ଜ୍ୱଳ କୁନି ଝିଅଟିଏ ଖେଳୁଛି। ସିଦ୍ଧ ପୁରୁଷ ପ୍ରଭୁଙ୍କ ମହିମା ଗାଇ ଗାଇ ଆନନ୍ଦ ମନରେ ଝିଅଟିକୁ ନେଇ ପାଳିଲେ। ତା'ର ସେ ଉଜ୍ଜ୍ୱଳ ରୂପ ଦେଖି ସେ ତାକୁ ନାଆଁ ଦେଲେ ରୋହିଣୀକୁମାରୀ।

ସମୁଦ୍ରକୂଳରେ ସେହି କୁଡ଼ିଆରେ ଭାଇ ଭଉଣୀ ତିନିଜଣ ବଢ଼ିଚାଲିଲେ। ସେହି ସିଦ୍ଧପୁରୁଷହିଁ ହେଲେ ସେମାନଙ୍କର ପିତା, ମାତା ଓ ଗୁରୁଦେବ। ସେ ସେମାନଙ୍କୁ ବହୁ ଜ୍ଞାନ ଦେଇ ସକଳ ବିଦ୍ୟା ଶିଖାଇ ବିଦ୍ୱାନ୍ କରି ଗଢ଼ିଲେ। ସେମାନେ ବଡ଼ ହୋଇ ମଣିଷ ହୋଇଯିବା ପରେ ଦିନେ ସେ ସେମାନଙ୍କୁ କହିଲେ, "ଦେଖ, ମୁଁ ଏପରି ଗୋଟିଏ ନିର୍ଜନ ସ୍ଥାନରେ ରହିଛି ଯେ, ଏଠାରେ ସଂସାରର ରୀତିନୀତି ଶିଖିବାର କୌଣସି ସୁବିଧା ନାହିଁ। ସଂସାରର ରୀତିନୀତି ନ ଶିଖିଲେ ତୁମର ଜ୍ଞାନ ଅପୂର୍ଣ୍ଣ ରହିଯିବ। ତେଣୁ ତୁମେ ତିନିହେଁ ନିକଟସ୍ଥ କୌଣସି ନଗରକୁ ଯାଇ ରୁହ, ସେଠାରେ ତୁମେ ଏ ସବୁ ଶିଖି ପାରିବ।"

ତିନିହେଁ ଏକ ସଙ୍ଗରେ କହିଉଠିଲେ, "କିନ୍ତୁ ପିତା, ଆପଣଙ୍କୁ ଛାଡ଼ି ଆମେ ସେଠାରେ ଚଳିବୁ କିପରି ?"

ସିଦ୍ଧପୁରୁଷ କହିଲେ, "ଭୟ କର ନାହିଁ। ତୁମେ ଅପରର ଅପକାର ନ କରିବା ପର୍ଯ୍ୟନ୍ତ ପ୍ରଭୁ ତୁମର ଅମଙ୍ଗଳ କରିବେ ନାହିଁ। ସହରରେ ରହି ନିଜେ ନିଜ ଗୋଡ଼ରେ ଠିଆହେବାକୁ ଶିଖ। ମୁଁ ତୁମଲାଗି କିଛି ଟଙ୍କା ପଇସା ସଞ୍ଚିଛି। ସେ ସବୁ ନେଇ କିଛିଦିନ ଚଳ— ତା'ପରେ ନିଜେ ଉପାର୍ଜନ କରିବା ଶିଖିବ ଏବଂ ମୋର ଜଟର ଏହି କେଶଟି ପାଖରେ ରଖିଥିବ। ଯଦି ସେପରି ଅତ୍ୟନ୍ତ ବିପଦରେ ପଡ଼, ତେବେ ଏ କେଶଟି ପୋଡ଼ିଦେବ। ମୁଁ ସଙ୍ଗେ ସଙ୍ଗେ ଆସି ତୁମ ପାଖରେ ପହଞ୍ଚିଯିବି।"

ଏଥର ତିନି ଭାଇ ଭଉଣୀ ସିଦ୍ଧପୁରୁଷଙ୍କ ଆଶୀର୍ବାଦ ନେଇ ନଗରରେ ରହିବା ଲାଗି ଚାଲିଲେ। ଅନେକ ଦିନ ଚାଲିବା ପରେ ସେମାନେ ଯାଇ ସେହି ନଗରରେ ପହଞ୍ଚିଗଲେ, ଯେଉଁଠି ସେମାନଙ୍କର ବାପ ରାଜୁତି କରୁଥିଲେ। ନଗରରେ ଛୋଟ ଘରଟିଏ ଭଡ଼ା ନେଇ ତିନିହେଁ ରହିଗଲେ। ଦିନ କେତେଟା ଭିତରେ ନଗରର ସବୁ ଲୋକ ସେମାନଙ୍କ ତେଜ ଓ ରୂପ ଦେଖି ଏପରି ମୁଗ୍ଧ ହୋଇଗଲେ ଯେ ସମସ୍ତେ ସେ ବିଷୟରେ ଆଲୋଚନା ଆରମ୍ଭ କରିଦେଲେ। କିଏ କହିଲା, "ଏ ଭାଇ-ଭଉଣୀଙ୍କ ପରି ସୁନ୍ଦର ଲୋକ ଏ ଦେଶରେ କେହି କେବେ ଦେଖିନଥିବେ।

ସେ ବଡ଼ଭାଇଟି ଦେହରୁ ତ ସୂର୍ଯ୍ୟଙ୍କ ପରି ତେଜ ଝରିପଡୁଛି।'' କିଏ କହିଲା ''ସାନ ଭାଇର ମୁହଁଟି ତ ଠିକ୍ ଚନ୍ଦ୍ରଙ୍କ ପରି ସୁଢ଼ଳ ସୁନ୍ଦର ହୋଇଛି।'' ଭଉଣୀଟିର ରୂପ ଦେଖି ତ ମାଇପି ମହଲରେ ଗୋଟିଏ ଚହଳ ପଡ଼ିଗଲା। ସେ ନଗରରେ ଯେଉଁମାନେ ସୁନ୍ଦରୀ ବୋଲି ଏଯାଏଁ ଗର୍ବ କରୁଥିଲେ, ସେମାନଙ୍କ ମୁହଁ ତ ତଳକୁ ପୋତିହୋଇଗଲା। କ୍ରମେ ଏ ଖବର ଯାଇ ରାଜନଅରରେ ପହଞ୍ଚିଗଲା। କଥାରେ ତ ଅଛି, ଚୋର ମନ ଗଣ୍ଠିରେ। ବୁଢ଼ୀରାଣୀ ଏ ଖବର ପାଉ ପାଉ ଶଙ୍କାରେ ଥରିଗଲେ। ଭାବିଲେ, ''ସତେ କ'ଣ ଛୁଆ ତିନିଟା ନ ମରି ବଞ୍ଚିଗଲେ କି! ପୁଅ ଯଦି ମୁଁ କଲା କୀର୍ତ୍ତି ଜାଣିଯିବ, ତେବେ ମୋତେ ଆଉ ତିନି ପୁରରେ ରଖାଇ ଦେବନାହିଁ। ଏ ତିନିଟା ଯେ କେହି ହୁଅନ୍ତୁ ପଛେ, ମାରି ନ ଦେଲେ ମୋର ଶାନ୍ତି ନାହିଁ।'' ତେଣୁ ଏ ଭାଇଭଉଣୀଙ୍କୁ ମାରିବା ଲାଗି ସେ ଗୋଟିଏ ଉପାୟ ପାଞ୍ଚିଲେ।

ଦିନେ ଏ ଦୁଇ ଭାଇ ଘରେ ଭଉଣୀକୁ ଏକୁଟିଆ ଛାଡ଼ିଦେଇ ସେଠାରେ ହେଉଥିବା ଗୋଟିଏ ଯାତ ଦେଖିବାକୁ ଯାଇଥାନ୍ତି। ଯାତରେ ବୁଲୁ ବୁଲୁ ଦେଖିଲେ ଜଣେ ବୁଢ଼ା ଗୋଟିଏ କାଠ ଫରୁଆ ବିକୁଛି। ବଡ଼ ଫରୁଆଟିଏ, ସେଥିରେ ସୁନ୍ଦର କୋଟିକମ ହୋଇଥାଏ। ହେଲେ ବୁଢ଼ା ଦାମ୍ ହାଁକୁଥାଏ ଢେର୍ ବେଶି। ଏତେ ଦାମ୍ ଦେଇ କାଠ ଫରୁଆଟିଏ କିଣିବାକୁ କେହି ମନେକରୁନଥା'ନ୍ତି। ଏ ଦୁଇଭାଇ ଫରୁଆଟି ଦେଖୁ ଦେଖୁ ବୁଢ଼ା କହିଲା, ''ସାଆନ୍ତେ, ତିଅଣ ସୁଆଦ ଚାଖଣରେ; ଫରୁଆଟି କିଣନ୍ତୁ, କିଣିଲେ ତା' ଗୁଣ ଜାଣିବେ।''

ସୂର୍ଯ୍ୟକୁମାର କହିଲା, ''ଦାମ୍ କିଛି କମାଇ ଦିଅ, ଆମେ କିଣିବୁ।''

ବୁଢ଼ା କହିଲା, ''ମୂଲେଇ ନାହିଁ। ଏ ତ ଆଉ ଇମିତି ସେମିତି ଫରୁଆ ହୋଇନି। ଏକୁ କିଣିଲାବାଲା ଭାବୁଥିବ କାହିଁକି ମିଛଟାରେ କିଣିଲି; କିନ୍ତୁ ନ କିଣିଲାବାଲା ଭାବିବ, ଆଃ କିଣିଥିଲେ କେଡ଼େ ବଢ଼ିଆ ହୋଇନଥାନ୍ତା !!''

ଏ ଦୁଇଭାଇ ଭାବିଲେ ବୋଧହୁଏ ଏ ଫରୁଆର କିଛି ଗୋଟିଏ ବଡ଼ ଗୁଣ ଅଛି, ନ ହେଲେ ବୁଢ଼ା ଏତେ ଜୋର୍ ଦେଇ କହନ୍ତା ନାହିଁ। ଏହା ଭାବି ସେମାନେ ଫରୁଆଟି କିଣିପକାଇଲେ। ଏଣେ କଣ ହେଲା ନା, ରୋହିଣୀ କୁମାରୀ ତା'ଘରେ ଏକୁଟିଆ ଥିବା ଜାଣିପାରି ବୁଢ଼ୀରାଣୀ କଳା ଚଦରଟିଏ ଘୋଡ଼େଇହୋଇ ଚୁପ୍‌କିନା ଆସି ତା' ପାଖରେ ପହଞ୍ଚିଗଲା। ତା' ରୂପ-ଗୁଣକୁ ପ୍ରଶଂସା କରି ଏଣୁତେଣୁ ମିଠା କଥା କହୁ କହୁ ତାକୁ କହିଲା, ''ମାଆ ଲୋ, ତୋର ଇଏ କି ରୂପ ଦେଖୁଛୁ, ଗୋଟିଏ କାମ କଲେ ଏହାଠାରୁ ବଳି ସୁନ୍ଦର ରୂପ ହୋଇଯାଆନ୍ତା।''

ନିଜକୁ ସୁନ୍ଦରୀ କରି ଗଢ଼ିବାକୁ ସବୁ ଝିଅଙ୍କର ମନ। ତେଣୁ ରୋହିଣୀକୁମାରୀ ବୁଢ଼ୀକୁ ପଚାରିଲା, ''ସତରେ କଣ କଲେ ମୁଁ ଆହୁରି ସୁନ୍ଦରୀ ହୋଇପାରିବି, କହୁନା ?''

ବୁଢ଼ୀରାଣୀ ଦେଖିଲେ ଏକା ଟେକାକେ ଯୋଡ଼ିଏ ପକ୍ଷୀ ମାରିହେବ। ସେ କହିଲେ, ''ଆଲୋ ମା, ସପ୍ତଶୃଙ୍ଗ ପର୍ବତ ବୋଲି ଗୋଟିଏ ପର୍ବତ ଅଛି ଯେ

ସେଥିରେ ଗୋଟିଏ ସୁନ୍ଦର ବଗିଚା ଅଛି। ସେ ବଗିଚାରେ ଗୋଟିଏ ସୁନା ଆତଗଛ ଅଛି। ତୁ ଯଦି ସେ ଗଛରୁ ଗୋଟିଏ ସୁନାଆତ ଆଣି ଖାଇଦିଅନ୍ତୁ, ତେବେ ତୋ ଦେହ ସୁନାପରି ଝଟକନ୍ତା। ଭାଇମାନଙ୍କୁ କହ ଯେ ସେମାନେ ଯାଇ ସୁନାଆତଟିଏ ଆଣିଦେବେ।'' ଏତକ କହିଦେଇ ସେ ଘରେ କାମ ଅଛି କହି ସେଠାରୁ ପଳାଇଗଲେ। ବୁଢ଼ୀରାଣୀ ରୋହିଣୀ ମନରେ ଏତକ ନିଶା ଲଗାଇଦେଇ ଚାଲିଯିବାର କିଛି ସମୟ ପରେ ତା' ଦୁଇଭାଇ କାଠ ଫରୁଆଟି ଧରି ଘରକୁ ଫେରିଲେ। ସେତେବେଳକୁ ରୋହିଣୀକୁମାରୀ ଲୁହ ଛଳଛଳ ଆଖିରେ ଚାହିଁଥାଏ। ତା ଆଖିରେ ଲୁହ ଦେଖି ଦୁଇଭାଇ ଏକସଙ୍ଗରେ ପଚାରିଉଠିଲେ, ''କିଲୋ, ତୋର କଣ ହୋଇଛି ଯେ ଏପରି କାନ୍ଦୁଛୁ?''

ରୋହିଣୀକୁମାରୀ କହିଲା, ''ମୋର ଗୋଟିଏ ସୁନାଆତ ଖାଇବାକୁ ମନହେଉଛି। ତୁମେ କଣ ଆଣିଦେବ ଯେ ପଚାରିହେଉଛ?''

ଦୁଇଭାଇ କହିଲେ, ''ଆଲୋ, ଛାର ଗୋଟିଏ ଆତ ପାଇଁ ଏପରି କାନ୍ଦୁଛୁ? ଆମେ ନିଶ୍ଚୟ ଆଣିଦେବୁ; ସୁନାଆତ କେଉଁଠି ମିଳିବ, କହିଲୁ?''

ଭଉଣୀ କହିଲା, ''ସେ କଣ ଏଠିକା ଫଳ; ସେ ଫଳ ଯାଇ ସପ୍ତଶୃଙ୍ଗ ପର୍ବତ ଉପରେ ଗୋଟିଏ ବଗିଚାରେ ଫଳୁଛି।''

ଭାଇମାନେ କହିଲେ, ''ଠିକ୍ ଅଛି, ଆମେ ସେଠାକୁ ଯାଇ ଆଣିଦେବୁ। ତୁ ଆଗ ଦେଖ, ଆମେ କିପରି ବଢ଼ିଆ ଫରୁଆଟିଏ କିଣି ଆଣିଛୁ।''

ଭଉଣୀକୁ ଦେଖାଇବା ପାଇଁ ସୂର୍ଯ୍ୟକୁମାର ଫରୁଆଟି ଖୋଲିଦିଏ ତ ତା ଭିତରୁ ଗୋଟିଏ ଛୋଟ ପକ୍ଷିରାଜ ଘୋଡ଼ା ଫକ୍କିନା ତଳକୁ ଡେଇଁପଡ଼ିଲା। ଚାହୁଁ ଚାହୁଁ ସେ ଘୋଡ଼ାଟି ବଢ଼ିଯାଇ ତାର ଦୁଇ ଡେଣା ହଲାଇ ପଚାରିଲା, ''ମଣିମା, କେଉଁଠିକି ଯିବେ, ଆଦେଶ କରନ୍ତୁ।''

ସୂର୍ଯ୍ୟକୁମାର ଫରୁଆର କରାମତି ବୁଝିଗଲା। ସେ ଚନ୍ଦ୍ରକୁମାରକୁ ଭଉଣୀ ପାଖରେ ରଖିଦେଇ ନିଜେ ସେ ପକ୍ଷିରାଜ ଘୋଡ଼ା ଉପରେ ଚଢ଼ିଗଲା। କହିଲା, ''ଚାଲ ସପ୍ତଶୃଙ୍ଗ ପର୍ବତର ଯେଉଁଠି ସୁନାଆତ ଗଛ ଅଛି, ମତେ ସେଇଠିକି ନେଇଯାଅ।'' ଏ ଆଦେଶ ପାଇବାମାତ୍ରେ ପକ୍ଷିରାଜ ଘୋଡ଼ା ଆକାଶକୁ ଉଠିଗଲା। ସେ ଉଡ଼ି ଉଡ଼ି ଯାଇ ସପ୍ତଶୃଙ୍ଗ ପର୍ବତରେ ଥିବା ସୁନାଆତ ଗଛ ପାଖରେ ଓହ୍ଲାଇପଡ଼ିଲା। କିନ୍ତୁ ସେ ବଗିଚାରେ ଚାଳିଶିଟା ଅସୁର ଗଦା ମୁଦ୍‌ଗର ଧରି ବାରମାସ ସାରା ଜଗିରହିଥାନ୍ତି। କିଏ ସେ ଏପରି ବଗିଚାରେ ପଶିଗଲା ବୋଲି ସେମାନେ ରେରେକାର ନାଦ କରି ସୁନାଆତ ଗଛ ପାଖକୁ ଦୌଡ଼ି ଆସିଲେ। କିନ୍ତୁ ସେମାନେ ଆସି ସେଠାରେ ପହଞ୍ଚିବା ପୂର୍ବରୁ ସୂର୍ଯ୍ୟକୁମାର ଗୋଟିଏ ସୁନାଆତ ତୋଳିଦେଇ ଘୋଡ଼ା ଛୁଟାଇଦେଲା। ଅସୁରଗୁଡ଼ାକ ଆବାକାବା ହୋଇ ଚାହିଁଥାନ୍ତି– ସେ ସୁନାଆତ ନେଇ ଘରେ ପହଞ୍ଚିଗଲା। ରୋହିଣୀକୁମାରୀ ସେ ଆତଟି ଯେମିତି ଖାଇଦେଇଛି ସେମିତି ତା' ଦେହର ରୂପ ଝଳି ଚାରିଗୁଣ ହୋଇ ବଢ଼ିଗଲା। ବୁଢ଼ୀରାଣୀ ଏ ଖବର ପାଇ ରାଗରେ ଜଳିଗଲେ। ଆଉ ଦିନେ ଦୁଇଭାଇ ଘରେ

ନଥିବା ବେଳେ ସେ ଆସି ରୋହିଣୀକୁମାରୀ ପାଖରେ ପହଞ୍ଚିଯାଇ କହିଲେ, ''ଦେଖିଲୁ, ମୋ କଥା ସତ ନା ମିଛ ? କିନ୍ତୁ ଆଉ ଗୋଟିଏ କାମ ଯଦି କରନ୍ତୁ, ତୋ ଜୀବନରେ ଆଉ ଦୁଃଖ ବୋଲି କିଛି ରହନ୍ତା ନାହିଁ।''

ରୋହିଣୀକୁମାରୀ ଆଗ୍ରହ ଦେଖାଇ କହିଲା, ''ସେ କଥାଟି କଣ କହୁନା, ମାଉସୀ ?''

ବୁଢ଼ୀରାଣୀ କହିଲେ, ''ସେ ଯେଉଁ ସୁନାଆତ ଅଛି, ତୁ ଯଦି ସେ ଗଛର ବଡ଼ ଡାଳଟିଏ ଅଣାଇପାରନ୍ତୁ, ତେବେ ଡାଳଟି ବାଗିରେ ପୋତିଦେଲେ ସେଥିରେ ସଂସାରର ଯେତେ ଗୀତ ଗାଇବା ଚଢ଼େଇ ଅଛନ୍ତି ସମସ୍ତେ ଆସି ଗୀତ ଗାଆନ୍ତେ। ସେ ଗୀତ ଶୁଣିଲେ ତୋ ଜୀବନରେ ଦୁଃଖ ବୋଲି କିଛି ରହନ୍ତା ନାହିଁ। ତୋର ପାରିବାର ଭାଇମାନେ ଅଛନ୍ତି; କହିଲେ ନିଶ୍ଚୟ ଆଣିଦେବେ।'' ଏତକ କହିଦେଇ ସେ କାମର ବାହାନା କରି ସେଠାରୁ ପଳାଇଗଲେ। ସେ ଭାବିଲେ, ଏପରି କାମରେ ଭାଇ ଦୁଇଟାକୁ ପଠାଇଦେଲେ, ସେମାନେ ଅସୁରଙ୍କ ହାତରେ ମରିଯିବେ, ଆଉ ଏ ଭଉଣୀଟା ଏଠାରେ ଏକୁଟିଆ ରହି ବଳେ ମରିଯିବ।

ସେ ଚାଲିଯିବାର କିଛି ସମୟ ପରେ ଦୁଇଭାଇ ଘରକୁ ଆସି ଦେଖନ୍ତି ତ ଭଉଣୀ ମୁହଁ ଫୁଲେଇ ବସିଛି। ଅନେକ ପଚରାପଚରି ପରେ ସେ କହିଲା, ''ମୋ ପାଇଁ ସେ ସୁନାଗଛରୁ ଡାଳଟିଏ ଆଣିଦେବ ତ କୁହ, ନହେଲେ ମୁଁ ମୋର କାନ୍ଦିଲି କି ହସିଲି, କିଛି ମୋତେ ପଚାରନାହିଁ।''

''ଆଲୋ, ଏହି କଥାକୁ ଏତେ ରୁଷିଛୁ!'' କହି ଚନ୍ଦ୍ରକୁମାର ଫଗୁଆ ଫିଟାଇଦେଲା। ତା'ଭିତରୁ ପକ୍ଷିରାଜ ଘୋଡ଼ା ବାହାରିପଡ଼ି ଦୁଇଡେଣା ପିଟି ପଚାରିଲା, ''ଏଥର କି କାମରେ ଯିବା, ମଣିମା ?''

''ସୁନାଆତଗଛର ଗୋଟିଏ ଡାଳ ଆଣିବା। ଚାଲ, ମତେ ସେହି ସୁନାଆତଗଛ ପାଖକୁ ନେଇ ଯାଆ।'' କହି ଚନ୍ଦ୍ରକୁମାର ତା ଖଣ୍ଡା ଧରି ଘୋଡ଼ାରେ ଚଢ଼ିଗଲା। ଘୋଡ଼ା ତାକୁ ଆକାଶମାର୍ଗକୁ ଉଠାଇ ନେଇ ବିଜୁଳି ବେଗରେ ଉଡ଼ିବାକୁ ଲାଗିଲା। ସେ ଘୋଡ଼ା ଯେତେବେଳେ ସୁନାଆତଗଛ ପାଖରେ ଓହ୍ଲାଇ ପଡ଼େ, ଅସୁରଗୁଡ଼ାକ ସେତେବେଳେ ମେଘ ଗର୍ଜନ କରି ସେଠାକୁ ଦୌଡ଼ି ଆସିଲେ। ପକ୍ଷିରାଜ ଘୋଡ଼ା ଚନ୍ଦ୍ରକୁମାରକୁ କହିଲା, ''ମଣିମା, ଗୋଟାଏ ଚୋଟରେ ଗୋଟାଏ ଡାଳ ହାଣି ଶୀଘ୍ର ଉଠି ଆସନ୍ତୁ।'' ଚନ୍ଦ୍ରକୁମାର ଘୋଡ଼ାରୁ ନ ଓହ୍ଲାଇ ଖଣ୍ଡାର ଗୋଟିଏ ଚୋଟରେ ଗୋଟିଏ ଡାଳ ହାଣି ଟାଣି ଆଣିଲା। ପର ମୁହୂର୍ତ୍ତରେ ପକ୍ଷିରାଜ ଘୋଡ଼ା ପୁଣି ଆକାଶମାର୍ଗକୁ ଉଠିଗଲା। ଅସୁରଗୁଡ଼ାକ ହା-ହତାଶ ହୋଇ ଚାହିଁଥାନ୍ତି, ଚନ୍ଦ୍ରକୁମାର ସୁନାଆତଗଛର ଡାଳ ନେଇ ବିଜୁଳି ବେଗରେ ଘରକୁ ଲେଉଟି ଆସିଲା। ଡାଳଟି ଆଣି ଘର ବାରିରେ ପୋତି ଦେଉଦେଉ ସଂସାରର ସବୁ ସୁନ୍ଦର ଚଢ଼େଇ ଓ ଗୀତଗାଇବା ଚଢ଼େଇ ଆସି ସେ ଡାଳରେ ଖେଳି ବୁଲି ଗୀତ ଗାଇବାକୁ ଲାଗିଲେ। ରୋହିଣୀକୁମାରୀର ଖୁସି ଦେଖେ କିଏ ! ସତରେ ତା ମନର ସବୁ ଦୁଃଖ ପାଶୋରିହୋଇଗଲା।

ଭାଇ-ଭଉଣୀ ତିନିହେଁ କିଛିଦିନ ଖୁବ୍ ଖୁସିରେ ରହିଲେ । ପକ୍ଷିରାଜ ଘୋଡ଼ାଟି ଫରୁଆ ଭିତରେ ରହିଥାଏ । ଯେତେବେଳେ ଇଚ୍ଛା ସେତେବେଳେ ଫରୁଆ ଖୋଲି ଦୁଇଭାଇ ଘୋଡ଼ାରେ ବସି ଦେଶ ସାରା ବୁଲନ୍ତି । କିଛି ଦିନ ଭିତରେ ବୁଢ଼ୀରାଣୀ ସୁନାଆଡ଼ ଡାଳ ଆସିଯାଇଥିବା ଖବର ପାଇଗଲେ । ସେ ପୁଣି ରାଗରେ ରକ୍ତଚାଉଳ ଚୋବାଇଲେ । ନିଜର ସବୁ ମତଲବ ଅକାମୀ ହୋଇଗଲା ଦେଖି ବୁଢ଼ୀରାଣୀ ପୁଣି ଗୋଟିଏ କିଛି ଉପାୟ ଖୋଜିବସିଲେ । ସେ ଯୁଗର ଅନେକ ଦୂରରେ ଗୋଟିଏ ଦୁର୍ଗମ ପର୍ବତ ଉପରେ ଶିଶିନେନା ବୋଲି ଗୋଟିଏ ତ୍ରିକାଳଜ୍ଞ ଚଢ଼େଇ ବାସ କରୁଥିଲା । ସେ ମଣିଷର ଆଗତ ଭବିଷ୍ୟତ ସବୁ ଜାଣେ; କିନ୍ତୁ ସେ କାହାରି ବଶ ହୁଏନି । ତା'ର କଥା-କଥାକେ କ୍ରୋଧ, ପୁଣି ସେ ଯାହାକୁ ଯାହା କହିଦିଏ, ତାହା ଫଳିଯାଏ । ତେଣୁ ତା ଭୟରେ ସେ ପର୍ବତକୁ କେହି ଯାଆନ୍ତି ନାହିଁ । ଯିଏ ବା ଯାଏ, ସେ ଯେତେ ବଡ଼ ପରାକ୍ରମୀ ହେଉ ପଛେ ସେହି ପାହାଡ଼ରେ ରହିଯାଏ, ଆଉ ଫେରିପାରେ ନାହିଁ । ବୁଢ଼ୀରାଣୀ ଏତକ ଜାଣିଥାନ୍ତି । ସେ ଭାବିଲେ, 'ଭାଇ ଦୁଇଟାକୁ ସେହି ଶିଶିନେନା ପାଖକୁ ପଠାଇଦେବି ଯେ ସବୁ ଅତୁଆ ତୁଟିଯିବ ।' ଏହା ଭାବି ସେ ଦିନେ ସନ୍ଧ୍ୟାରେ ଏ ଦୁଇଭାଇ ଘରେ ନଥିବା ବେଳେ ଜଣାଣାଳଟିଏ ଘୋଡ଼ାଇହୋଇ ରୋହିଣୀକୁମାରୀ ପାଖରେ ଆସି ପହଞ୍ଚିଗଲେ । ତାଙ୍କୁ ଦେଖୁ ଦେଖୁ ରୋହିଣୀକୁମାରୀ ନମସ୍କାର କରି ଆସନ ଦେଇ ବସାଇଲା । କହିଲା, "ସତେ ମାଉସି, ତୁମେ ଠିକ୍ କହିଥିଲ, ସୁନାଆଡ଼ ଡାଳ ଆସିବାଦିନୁ ମୋର ସବୁ ଦୁଃଖ ପାଶୋର ହୋଇଗଲା । କି ସୁନ୍ଦର ଚଢ଼େଇ ଆସି ଗୀତ ଗାଉଛନ୍ତି ! ତୁମେ ଏତେ କଥା କିପରି ଜାଣିଲ ମ ?"

ବୁଢ଼ୀରାଣୀ ଗୋଡ଼ ଲମ୍ବେଇ ବସୁ ବସୁ କହିଲେ, "ଆଲୋ ମାଆ, ତୁଣ୍ଡବାଇଦ ସହସ୍ର କୋଶ । କୋଉଠା କଥା କୋଉଠିକି ଚାଲିଯାଉଛି । ମୁଁ ଇମିତି ମୋ ଆଇବୁଢ଼ୀଠାରୁ ଶୁଣିଥିଲି । ତୁ ତ ଏବେ ନିଜ ଆଖିରେ ଦେଖିଲୁ, ନିଜେ ଅଙ୍ଗେ ନିଭେଇଲୁ– ସତ କି ମିଛ ଜାଣୁଥିବୁ । ତେବେ ଇଏ କି ଚଢ଼େଇ– ଏ ତ ଖାଲି ନାଚୁଛନ୍ତି, ଗୀତ ଗାଉଛନ୍ତି । ମୁଁ ଶୁଣିଛି, ଦୂର ପର୍ବତରେ ଶିଶିନେନା ବୋଲି ଗୋଟିଏ ଚଢ଼େଇ କାଳେ ଅଛି ଯେ ତା ଗୀତ ପଦଟିଏ ଶୁଣିଦେଲେ ମଣିଷର ଗତ ସାତଜନ୍ମର ଦୁଃଖ, ପୁଣି ଆସନ୍ତା ଜନ୍ମର ଦୁଃଖ ଦୂର ହୋଇଯିବ । ଭାଇଙ୍କୁ କହ ଯେ ସେହି ଶିଶିନେନା ଚଢ଼େଇଟି ନେଇ ଆସିବେ । ମଲା-ହଜିଲାଯାଏ ଦୁଃଖ ରହିବ ନାହିଁ ।"

ଏହିପରି କଥାଭାଷା କରି ବୁଢ଼ୀ ରାଣୀ ଚାଲିଗଲେ । ରୋହିଣୀକୁମାରୀକୁ ଏଥର ଶିଶିନେନା ଚଢ଼େଇ ନିଶା ଧରିଲା । ରାତିରେ ଭାଇମାନେ ଆସି ଘରେ ପାଦ ଦେଉଦେଉ ସେ ସକେଇବା ଆରମ୍ଭ କରିଦେଲା । କଥା କଣ ବୋଲି ଦୁଇଭାଇ ଅନେକ ପଚାରିବା ପରେ ସେ କହିଲା, "ତୁମେ ଯଦି ମୋ ଲାଗି ସେ ଦୂର ପର୍ବତରୁ ଶିଶିନେନା ଚଢ଼େଇ ଆଣିନଦେବ, ତେବେ ମୁଁ ଇମିତି କାନ୍ଦି କାନ୍ଦି ମରିଯିବି ।"

ଏକଥା ଶୁଣି ଦୁଇଭାଇ ଫରୁଆ ଫିଟାଇ ପକ୍ଷିରାଜ ଘୋଡ଼ାକୁ କାଢ଼ିଲେ ।

ପକ୍ଷିରାଜ ଘୋଡ଼ା ତାର ଡେଣା ଛାଟି ପଚାରିଲା, "ଏଥର କେଉଁଠିକି ଯିବା, ମଣିମା ?" ଦୁଇଭାଇ କହିଲେ, "ଚାଲ ଏଥର ସେ ଦୂର ପର୍ବତକୁ ଯିବା; ସେଠାରୁ ଶିଶିନେନା ଚଢ଼େଇ ଧରି ଆଣିବା ।"

ପକ୍ଷିରାଜ ଘୋଡ଼ା ମୁଣ୍ଡ ହଲାଇ କହିଲା, "ମଣିମା, ସେ ତ ବଡ଼ ବିଷମ ଜାଗା । ଗତ ଦୁଇଥର ଆମେ ସାମାନ୍ୟ ଚାଳିଶିଟା ଅସୁରକୁ ଠକି ଦେଇ ଚାଲିଆସିଲେ ସିନା, ଏଥର ଯେ ଶିଶିନେନା ହାବୁଡ଼ରୁ ଖସି ଆସିବା ତାହା ଭାବନ୍ତୁ ନାହିଁ। ଆପଣ ବୋଧହୁଏ ଜାଣନ୍ତି ନାହିଁ, ସେ ଚଢ଼େଇ ଭାରି ଖରତୁଣ୍ଡୀ; କଣ ନାହିଁ କଣ କହିଦେବ । ପୁଣି ସେ ଯାହା କହିଦେବ, ତାହା ଫଳିଯିବ । ଏପରି କାମରେ ଯିବା ଆପଣମାନଙ୍କ ପକ୍ଷରେ ଉଚିତ ହେବନାହିଁ ।"

ଚନ୍ଦ୍ରକୁମାର କହିଲା, "ଆରେ, କଥାରେ ଅଛି– ଯୋଡ଼ାକୁ ଘୋଡ଼ା ସରି ନୁହେଁ । ଆମେ ଦୁଇଭାଇ ଅଛୁ, ଦେଖାଯିବ କିଏ କଣ କରିବ । ତୁ ଚାଲ ।"

ଘୋଡ଼ା ବିଚରା ଆଉ କଣ କରିବ ! ସେ ଦୁଇଭାଇଙ୍କୁ ପିଠି ଦେଖାଇଦେଲା । ଦୁଇଭାଇ ଭଉଣୀକୁ ଏକା ରଖିଦେଇ ରାତାରାତି ଦୂର ପର୍ବତକୁ ଘୋଡ଼ା ଉଡ଼ାଇଦେଲେ । ପକ୍ଷିରାଜ ଘୋଡ଼ା ବିଜୁଳି ବେଗରେ ଉଡ଼ିଯାଇ ସକାଳୁ ସକାଳୁ ସେହି ପର୍ବତ ଉପରେ ପହଞ୍ଚିଗଲା । ସେ କି ଉଚ ପର୍ବତ ! ଦିନରାତି ତା' ଉପରେ ବରଫ ପଡ଼ିଥାଏ । ମେଞ୍ଚା ମେଞ୍ଚା ତୁଷାର ଝଡ଼ି ପଡୁଥାଏ । ଆଣ୍ଠିଏ ବହଳର ତୁଷାର ଉପରେ ଓହ୍ଲେଇପଡ଼ି ଦୁଇଭାଇ ଡାକ ଛାଡ଼ିଲେ, "ଶିଶିନେନା, କେଉଁଠି ଅଛୁ ଆସ । ଆ, ଆ, ଆ । ଆମେ ନେଇ ତୋତେ ସୁନା ପିଞ୍ଜରାରେ ରଖିବୁ ।"

ପର୍ବତର ବରଫ ଶୃଙ୍ଗ ଭିତରୁ ଉତ୍ତର ଆସିଲା, "ପଥର, ପଥର, ସେ ଦୁଇଭାଇଙ୍କର ତଳିପାଠାରୁ ଆଣ୍ଠୁଯାଏ ପଥର ହୋଇଯାଉ ।" ମୁହୂର୍ତ୍ତକ ଭିତରେ ଦୁଇଭାଇଙ୍କର ତଳିପାଠାରୁ ଆଣ୍ଠୁଯାଏ ଶଙ୍ଖମଲମଲ ପଥର ପରି ଧଳା ହୋଇଗଲା । ଦୁଇଭାଇ ଯେଉଁଠି ଠିଆହୋଇଥିଲେ ସେଇଠି ଖୁଣ୍ଟ ପୋତିଲା ପରି ରହିଗଲେ । ତଥାପି ସେମାନେ ପୁଣି ଡାକ ପକାଇଲେ, "ଆ, ଆ, ଶିଶିନେନା ! ଆମେ ତତେ ନାନା ମିଠାଫଳ ଖାଇବାକୁ ଦେବୁ, ଆ !"

କିନ୍ତୁ ଶିଶିନେନା ବରଫ ଶୃଙ୍ଗରୁ ଉତ୍ତର ଦେଲା, "ପଥର, ପଥର ହୋଇଯାଉ, ଦୁଇଭାଇଙ୍କର ଜଙ୍ଘଯାଏ ପଥର ହୋଇଯାଉ ।" ସଙ୍ଗେ ସଙ୍ଗେ ଦୁଇଭାଇଙ୍କର ଜଙ୍ଘଯାଏ ପଥର ପାଲଟିଗଲା । ତଥାପି ଧନ୍ୟ କହିବା ସେ ଦୁଇଭାଇଙ୍କର ଭଉଣୀ-ସ୍ନେହକୁ । ଏତେ ଅବସ୍ଥା ହୋଇ ବି ସେମାନେ ଡାକ ପକାଇଲେ, "ଆ, ଆ, ଶିଶିନେନା, ଆମେ ତତେ ସୁନାଆତ ଗଛ ଡାଳରେ ଖେଳାଇବୁ, ଆ ।" ଏଥର ଶିଶିନେନା ବରଫ ଶୃଙ୍ଗରୁ ଉତ୍ତରରେ କହିଲା, "ପଥର, ପଥର ହୋଇଯାଉ; ସେ ଦୁଇଭାଇଙ୍କର ଅଣ୍ଟାଯାଏ ପଥର ହୋଇଯାଉ ।"

ହାୟ ! ଆଖିପିଛୁଳାକେ ଦୁଇଭାଇଙ୍କର ଅଣ୍ଟାଯାଏ ପଥର ପାଲଟିଗଲା । ଆଉ ଏ କାଳତୁଣ୍ଡୀ ଚଢ଼େଇକୁ ଡାକି ଲାଭ ନାହିଁ ଦେଖି ଦୁଇଭାଇ ନିରାଶ ହୋଇଯିବାକୁ ବସିଛନ୍ତି, ସୂର୍ଯ୍ୟକୁମାରର ମନେ ପଡ଼ିଗଲା ଯେ ବିଶେଷ ବିପଦ ବେଳେ ସିଦ୍ଧପୁରୁଷଙ୍କୁ

ଡାକ ପକାଇବା ଲାଗି । ସେ ଗୋଟିଏ କେଶ ଦେଇଥିଲେ । ସେ ସାଙ୍ଗେ ସାଙ୍ଗେ ତା ପୋଷାକରୁ ଝିକିମିକି ପଥର ଓ ଲୁହା ଖାଡ଼ି କାଢ଼ି ନିଆଁ ବାହାର କରିଦେଲା ଏବଂ ସେହି ନିଆଁରେ ସିଦ୍ଧପୁରୁଷଙ୍କର କେଶଟି ପୋଡ଼ିଦେଲା । କେଶଟି ପୋଡ଼ିଛି କି ନାହିଁ, ସିଦ୍ଧପୁରୁଷ ଆସି ସେଠାରେ ପହଞ୍ଚିଗଲେ । ସେ ଦୁଇଭାଇଙ୍କୁ କୁଶଳ ସମାଚାର ପଚାରନ୍ତି ତ ସେମାନେ ନିଜର ଦୁରବସ୍ଥା ଦେଖାଇ କହିଲେ, ''ରୋହିଣୀକୁମାରୀ ଶିଶିନେନା ଚଢ଼େଇ ପାଇଁ ଅନେକ କାନ୍ଦିବାରୁ ଆମେ ସେ ଚଢ଼େଇଟି ନେବାଲାଗି ଏ ପର୍ବତକୁ ଆସିଥିଲୁ । ଏଠାରେ ତାକୁ ଆ, ଆ ବୋଲି ଡାକିବାରୁ ଦେଖନ୍ତୁ ସେ କିପରି ଆମକୁ ଅଣ୍ଟାଯାଏ ପଥର କରିଦେଇ ସାରିଲାଣି । ଆପଣଙ୍କ ବିନା ସାହାଯ୍ୟରେ ଆମେ ଆଉ ମଣିଷ ହୋଇ ପାରିବୁ ନାହିଁ କି, ସେ ଚଢ଼େଇକୁ ନେଇ ପାରିବୁ ନାହିଁ ।''

ଏହା ଶୁଣି ସିଦ୍ଧପୁରୁଷ ସେ ଚଢ଼େଇକି ଡାକିଲେ, ''ଶିଶିନେନା, ଶୀଘ୍ର ଆସି ମୋ ପିଲାଙ୍କୁ ସାହାଯ୍ୟ କର ।'' ସଙ୍ଗେ ସଙ୍ଗେ ଶିଶିନେନା ଚଢ଼େଇ ଉଡ଼ି ଆସି ସେଠାରେ ପହଞ୍ଚିଗଲା । ତା'ପାଟିରେ ସେ ଗୋଟିଏ ଅମୃତ କଳସ ଧରି ଆସିଥାଏ । ଆସୁ ଆସୁ ସେ ଅମୃତ କଳସରୁ କିଛି ଅମୃତ ନେଇ ସୂର୍ଯ୍ୟକୁମାର ଓ ଚନ୍ଦ୍ରକୁମାରଙ୍କ ଦେହରେ ଛିଞ୍ଚିଦେଲା । ସଙ୍ଗେ ସଙ୍ଗେ ସେମାନଙ୍କର ଅଣ୍ଟା ପର୍ଯ୍ୟନ୍ତ ପୁଣି ପୂର୍ବପରି ହୋଇଗଲା । ସେମାନେ ଠିଆ ହୋଇଥିବା ସ୍ଥାନରୁ ଉଠିଆସି ସିଦ୍ଧପୁରୁଷ ଓ ଶିଶିନେନାକୁ ସ୍ତୁତି କରିବାକୁ ଲାଗିଲେ । ଏଥର ସିଦ୍ଧପୁରୁଷ ଶିଶିନେନାକୁ କହିଲେ, ''ଶିଶିନେନା, ଆଜିଠାରୁ ତୁ ମୋ ପିଲାଙ୍କୁ ମାଆପରି ପାଳନ କରିବୁ; ସେମାନଙ୍କୁ ତୋ ହାତରେ ଛାଡ଼ିଦେଇ ମୁଁ ଯାଉଛି ।''

ସିଦ୍ଧପୁରୁଷ ଚାଲିଯିବା ପରେ ଶିଶିନେନା ଏ ଦୁଇଭାଇଙ୍କ ସହିତ ପକ୍ଷିରାଜ ଘୋଡ଼ାରେ ବସି ନଗରକୁ ଚାଲିଆସିଲା । ଶିଶିନେନା ଚଢ଼େଇ ପାଇ ରୋହିଣୀକୁମାରୀ ଆନନ୍ଦରେ ନାଚିଉଠିଲା । କିନ୍ତୁ ନଗରରେ ପହଞ୍ଚିବାର ଦୁଇଟି ଦିନ ପରେ ଶିଶିନେନା ସେ ଭାଇ ଭଉଣୀଙ୍କୁ ସେମାନଙ୍କର ଜନ୍ମ ବୃତାନ୍ତ ଶୁଣାଇଦେଇ ବୁଢ଼ୀରାଣୀଙ୍କର କୀର୍ତ୍ତି କହିଗଲା । ବୁଢ଼ୀରାଣୀଙ୍କର ଏ ଛନ୍ଦକପଟ କଥା ଶୁଣି ରୋହିଣୀକୁମାରୀ ବିସ୍ମିତ ହୋଇ ପଚାରିଲା, ''ଆଚ୍ଛା ମାଆ ଶିଶିନେନା, ବର୍ତ୍ତମାନ ଉପାୟ କଣ ?''

ଶିଶିନେନା କହିଲା, ''ବିପଦ ବେଳେ ସାହସ ଧରିବା ମଣିଷର ଧର୍ମ । କାଲି ତୁମେ ତିନିଜଣ ରାଜାଙ୍କ ସିଂହଦ୍ୱାରରେ ଠିଆ ହୋଇଥିବ, ମୁଁ ବି ତୁମ ସହିତ ଥିବି । ରାଜା ନଅର ଭିତରୁ ବାହାରି ଆସିବାମାତ୍ରେ ତୁମକୁ ଦେଖି ସନ୍ତୁଷ୍ଟ ହୋଇଯିବେ; ନାନା କଥା ପଚାରିବେ । ତୁମେ ସେହି ଅବସରରେ ରାଜାଙ୍କୁ ସକଳକଥା ଖୋଲି କହିଦେବ । ତା'ପରେ ଦେଖିବ କେମିତି ମଜା ହେବ ।''

ତା' ପରଦିନ ଶିଶିନେନା କଥା ମାନି ଭାଇଭଉଣୀ ତିନିଜଣ ଯାଇ ରାଜାଙ୍କ ସିଂହଦ୍ୱାର ଆଗରେ ଠିଆହୋଇଗଲେ । କିଛି ସମୟ ପରେ ରାଜା ନଅର ଭିତରୁ ବାହାରି ଆସନ୍ତି ତ ଏ ତିନିଜଣଙ୍କ ଉପରେ ତାଙ୍କର ନଜର ପଡ଼ିଗଲା । ସେମାନଙ୍କର ତେଜ ଓ ରୂପ ଦେଖି ତାଙ୍କର ଆଖି ଖୋସିହୋଇଗଲା । ସେ ଭାବିଲେ, ସତରେ

ଏ ତିନିଜଣ ସୂର୍ଯ୍ୟ, ଚନ୍ଦ୍ର ଓ ରୋହିଣୀ ନକ୍ଷତ୍ର ପରି ହୋଇଛନ୍ତି । ମୋ ରାଣୀ ତ ମୋ ଲାଗି ଏପରି ପୁଅ ଝିଅ ଜନ୍ମ କରିବେ ବୋଲି କହିଥିଲେ । କିନ୍ତୁ ହାୟ ! ସବୁ ଆଶା ଆଶାରେହିଁ ରହିଗଲା । ଏମାନେ ହେଲେ ମୋ ପୁଅ ଝିଅ ହୋଇଥାନ୍ତେ କି !! ରାଜା ଏପରି ଭାବୁଛନ୍ତି, ଏ ତିନିଜଣ ଯାଇ ତାଙ୍କୁ ପ୍ରଣାମ କଲେ । ରାଜା ସନ୍ତୋଷରେ ପଚାରିଲେ, "କିରେ ବାପ, କିଲୋ ମାଆ, ତୁମେ ତିନିଜଣ କିଏସେ ?"

ସଙ୍ଗେ ସଙ୍ଗେ ସେମାନେ ସକଳ ବୃତ୍ତାନ୍ତ କହିଗଲେ । ସେତିକିବେଳକୁ ଶିଶିନେନା ଯାଇ ସେଠାରେ ପହଞ୍ଚିଯାଇ କହିଲା, "ରାଜା, ମୁଁ ଶିଶିନେନା କହୁଛି । ଏ ପୁଅ ଝିଅ ଯାହାସବୁ କହୁଛନ୍ତି, ସେ ସବୁ ଅକ୍ଷରେ ଅକ୍ଷରେ ସତ୍ୟ । ଆଉ ବିଳମ୍ବ ନ କରି ଶୀଘ୍ର ନିଜର ଭୁଲ୍ ସୁଧାରିପକାଅ ।"

ରାଜା ପୁଅଝିଅଙ୍କୁ କୋଳକୁ ଟାଣିନେଇ ଅନେକ କାନ୍ଦିଲେ । ସମସ୍ତେ ଯାଇ ସେହି ମୁହୂର୍ତ୍ତରେ ରାଣୀଙ୍କୁ ସେ ଅମୁହାଁ ଘରୁ ମୁକୁଳାଇ ଆଣିଲେ । ପୁଅଝିଅଙ୍କ ମୁହଁ ଦେଖି, ଶିଶିନେନାର କଥା ଶୁଣି ତାଙ୍କର ସାତଜନ୍ମର ଦୁଃଖ ପାଶୋର ହୋଇଗଲା । ରାଜାଙ୍କ ନଅର ଆନନ୍ଦ-ଉତ୍ସବରେ ସ୍ୱର୍ଗପରି ଦେଖାଗଲା । ରାଜ୍ୟଲୋକେ ଚାଳିଶି ଦିନଯାଏ ନାଚଗୀତ କରି ଉତ୍ସବ ପାଳିଲେ । ଆଉ ସେ ବୁଢ଼ୀରାଣୀଙ୍କୁ କଣ କଲେ ଜାଣିଛ ? ବୁଢ଼ୀର ଗାଲକେ କାଳି ଗାଲକେ ଚୂନ ବୋଳି ଦେଇ ସାହି ସାହି ବୁଲାଇବା ପରେ ରାଜ୍ୟରୁ ଏପରି ଦୂରକୁ ନେଇ ଛାଡ଼ିଦେଲେ ଯେ, ଆଉ ତାଙ୍କ ପରା ମିଳିଲା ନାହିଁ ।

# ପାସୋରା କନିଆଁ

ଗୋଟିଏ ଦେଶରେ ଜଣେ ରାଜା ଥାଆନ୍ତି ଯେ ତାଙ୍କ ରାଣୀଟି ଗୋଟିଏ ଗୁଣିଆଣୀ । ବିବାହ କରିବା ବେଳେ ରାଜା ତାର ଏ ଦୁର୍ଗୁଣ ଜାଣିନଥିଲେ; କିନ୍ତୁ ପରେ ଜାଣିଲେ ଯେ ସେ ସୁବିଧା ମିଳିଲେ ମଣିଷ ମାରି ରକ୍ତ ପିଇଯାଉଛି, ମଣିଷ-ମାଂସ ବି ଖାଉଛି । ତାକୁ ଏତେ ଗୁଣିଗାରେଡ଼ି, ଏତେ ମନ୍ତ୍ରଯନ୍ତ୍ର ଜଣା ଯେ ତାକୁ ଧରିବା ସହଜ ନୁହେଁ । ତେଣୁ ରାଜା କିଛି କରିପାରୁନଥାନ୍ତି । ଯାହାହେଉ, ସେ ରାଣୀ ଗୋଟିଏ ଅପୂର୍ବ ସୁନ୍ଦରୀ ଝିଅ ଜନ୍ମ କରିଥାଏ । ଝିଅଟିର ରୂପ ଯେପରି, ଗୁଣ ସେପରି; ରାଜା ତା ଉପରେ ସନ୍ତୁଷ୍ଟ ହୋଇ ତାକୁ ନାଆଁ ଦେଲେ ତିଲ୍‌ସେଟା । ରାଣୀଙ୍କ ବୁଦ୍ଧି ବୃତ୍ତି ଜାଣିବା ପରଠାରୁ ସେ ଝିଅଟିହିଁ ଥିଲା ରାଜାଙ୍କର ନୟନପିତୁଳି ।

ଦିନ ଗଡ଼ିଚାଲିଲା । ଝିଅର ବିବାହ ବୟସ ହେଲା ଦେଖି ରାଜା ଚିନ୍ତାରେ ପଡ଼ିଲେ; କାରଣ ଗୁଣିଆଣୀ ରାଣୀର ଗୁଣ ଜାଣି କୌଣସି ଦେଶରୁ ଜେମାଙ୍କ ଲାଗି ବରପ୍ରସଙ୍ଗ ଆସିଲା ନାହିଁ । ସେହି ଚିନ୍ତାରେ ସେ ଦେହଦୁଃଖରେ ପଡ଼ିଗଲେ । କେତେ ଆତୁ କେତେ ବୈଦ୍ୟ ଆସିଲେ, କେତେ ଔଷଧ ଦେଲେ; କିନ୍ତୁ କୌଣସିଥିରେ ରାଜାଙ୍କ ଦେହ ଭଲ ହେଲା ନାହିଁ । ଏ ସମୟରେ ସେ ନଗରକୁ ଅନ୍ୟ ଗୋଟିଏ

ଦେଶର ରାଜକୁମାର ବୁଲିଆସି ରାଜାଙ୍କ ନଅରରେ ଅତିଥି ହେଲେ। ତାଙ୍କ ନାଆଁ ଫୋରେଣ୍ଡିନୋ। ଫୋରେଣ୍ଡିନୋଙ୍କ ରୂପଟି ସତରେ କନ୍ଦର୍ପ ଭଳି; ଖୁବ୍ ଉଚ୍ଚ, ଖୁବ୍ ସୁସ୍ଥ ସବଳ ଓ ଖୁବ୍ ସୁନ୍ଦର ହସହସ ମୁହଁ। ସ୍ୱଭାବଟି ମଧ୍ୟ ଖୁବ୍ ଭଲ। ସେ ଆସି ନଅରରେ ରହିଛନ୍ତି କି ନାହିଁ, ଡଲ୍‌ସେଟାକୁ ଦେଖିଦେଲେ। ସେ ଦୁଇଜଣଙ୍କର ଚାରିଆଖି ଏକ ହୋଇଯିବାବେଳୁ ଦୁହେଁ ଭାବିନେଲେ ଯେ ଜଣେ ଆଉ ଜଣକୁ ଛାଡ଼ି ବଞ୍ଚି ପାରିବ ନାହିଁ।

କିନ୍ତୁ ସେ ରାଜକୁମାରଙ୍କୁ ଦେଖିବାବେଳୁ ତାଙ୍କୁ ଖାଇବାଲାଗି ଗୁଣିଆଣୀ ରାଣୀର ପାଟି ଲାଳେଇଲା। ସେ ନିଜ ଝିଅର ହାବଭାବ ଦେଖି କହିଲା, "ଆଲୋ ମାଆ, ସେ ରଜାପୁଅଟା ତୋତେ ଭଲପାଉଛି ବୋଲି ତୁ କିଆଁ ତାକୁ ଚାହୁଁଛୁ? ଆଜି ଜଣେ ବୈଦ୍ୟ ଆସିଥିଲେ ଯେ କହିଛନ୍ତି, ଯଦି ମହାରାଜାଙ୍କୁ ଜଣେ ସୁସ୍ଥ ସବଳ ରାଜପୁତ୍ରର ରକ୍ତ ପିଇବାକୁ ଦିଆଯିବ, ତେବେ ତାଙ୍କ ଦେହ ଭଲହୋଇଯିବ। ଏବେ ସୁବିଧା ମିଳିଛି, ତୁ ସେ ରଜାପୁଅକୁ ଭଲପାଉଛୁ ବୋଲି ବାହାନା କରି ତାକୁ ମାରିଦେ। ତା ରକ୍ତ ଆଣିଲେ, ମୁଁ ତୋ ବାପାଙ୍କୁ ପିଇବାକୁ ଦେବି ଯେ ସେ ଭଲହୋଇଯିବେ।

ଏକଥା ଶୁଣି ଡଲ୍‌ସେଟା ଆଖିରୁ ଲୁହ ବୋହିପଡ଼ିଲା। ସେ କାନ୍ଦି କାନ୍ଦି କହିଲା, "ମାଆ, ତୁମେ କଣ ମୋ ସୁଖ ଚାହଁନା? ମୁଁ ଯାହାକୁ ବିବାହ କରିବି ବୋଲି ମନେ ମନେ ବରଣ କରିଛି, ତାକୁ କିପରି ମାରିବି କହିଲ!"

ଗୁଣିଆଣୀ ଚିଡ଼ିଉଠି କହିଲା, "ସୁଖ! ହଇଲୋ, ଛାର ଗୋଟାଏ ରଜାପୁଅକୁ ବାହା ହେଲେ କି ସୁଖ ପାଇବୁ? ମୁଁ ତୋ ପାଇଁ ବରଘର ଠିକ୍ କରି ରଖିଛି। ବାପାଙ୍କ ଦେହ ଭଲ ହେବା ବାସିଦିନ ବାହାଘର କରାଇଦେବି। ଆମ ରାଜ୍ୟରେ ସେ ଯେଉଁ ବଡ଼ ପର୍ବତ ଦେଖୁଛୁ, ସେ ପର୍ବତରେ ମୋ ଭାଇ ପର୍ବତାସୁରର ରାଜ୍ୟ। ତାର ଗୋଟିଏ ପୁଅ ଅଛି ଯେ ସେ ତା ବାପାଠାରୁ ବି ବଡ଼ ଅସୁର। ମୁଁ ତା ସହିତ ତୋର ବାହାଘର କରାଇଦେବି।" ଡଲ୍‌ସେଟା ଏଥିରେ ଆହୁରି ବେଶି କାନ୍ଦିଉଠିଲା। ରାଣୀ ଗୋଟାଏ ଧମକ ଦେଇ କହିଲେ, "ଯେତେ କାନ୍ଦିବୁ କାନ୍ଦ, ହେଲେ ତୋତେ ସେ ରଜାପୁଅକୁ ମାରିବାକୁହିଁ ପଡ଼ିବ।"

ମାଆର ଏ ଜିଦ୍ ଦେଖି ଡଲ୍‌ସେଟାର ଦେହ ଶିହରି ଉଠିଲା। ସେ ଜାଣିଗଲା ଯେ ତା' ମାଆ ବାପାଙ୍କ ଦେହ ଭଲ ହେବା କଥା ଯାହା କହୁଛନ୍ତି, ସେଗୁଡ଼ା ସବୁ ମିଛ; ନିଜର ଅସୁର-ପ୍ରକୃତି ଥିବାରୁ ସେ ଫୋରେଣ୍ଡିନୋଙ୍କୁ ଖାଇବାକୁ ଚାହୁଁଛି। ଯେକୌଣସି ଉପାୟରେ ଫୋରେଣ୍ଡିନୋଙ୍କୁ ରକ୍ଷା କରିବାଲାଗି ଡଲ୍‌ସେଟା ବେଳକାଳ ଉଣ୍ଡି ତା ମାଆକୁ କହିଲା, "ମାଆ, ତୁମରି କଥା ରହୁ; ମୁଁ ଆଜି ସେ ରଜାପୁଅକୁ ମାରିଦେବି। ଆଜି ରାତିରେ ମୁଁ ତା ରହିବା ଘରକୁ ଗଲେ ତୁମେସବୁ କିଛି କହିବ ନାହିଁ ତ?"

ରାଣୀ ତ ସେହି କଥା ଚାହୁଁଥିଲା। ସେ କହିଲା, "ଆଲୋ, ଆମେ କାହିଁକି କ'ଣ କହିବୁ? ତୋ ବାପାଙ୍କ ରୋଗ ଭଲ କରିବା ପାଇଁ ତୁ ଯଦି ଗୋଟିଏ

କାମ କରିବୁ, ସେଥିରେ ଆମେ କାହିଁକି ଆପତ୍ତି କରିବୁ ଯେ ?''

ସେଦିନ ରାତିରେ ସମସ୍ତେ ଶୋଇଥିବାବେଳେ ଡଲ୍‌ସେଟା ଫୋରେଣ୍ଟିନୋଙ୍କ କୋଠରିରେ ପଶିଗଲା । ତାକୁ ଦେଖି ଫୋରେଣ୍ଟିନୋ ଯେତିକି ଆନନ୍ଦ ହେଲେ, ଆଶ୍ଚର୍ଯ୍ୟ ବି ସେତିକି ହେଲେ । ଡଲ୍‌ସେଟା ତାଙ୍କୁ ଚୁପ୍‌କରି କହିଲା, ''ରାଜକୁମାର, ମୋ ମା' ଜଣେ ଗୁଣିଆଣୀ; ସେ ଆପଣଙ୍କୁ ମାରି ଖାଇଯିବାକୁ ମସୁଧା କରୁଛି । ଚାଲନ୍ତୁ, ଆମେ ଏଠାରୁ ଖସି ପଳାଇଯିବା ।

ଏକଥା ଶୁଣୁ ଶୁଣୁ ରାଜକୁମାର ତାକୁ ସାଙ୍ଗରେ ନେଇ ନଅର ଭିତରୁ ଖସି ଚାଲିଗଲେ । ଅନ୍ଧାର ରାତି; କିଏ କାହାକୁ ଦେଖୁଛି ! ରାତି ପାହି ସକାଳ ହେବାବେଳକୁ ସେ ଦୁଇଜଣ ନଗର ପାର ହୋଇ ପାହାଡ଼ ପର୍ବତ ଡେଇଁ ଅନେକ ଦୂରକୁ ପଳାଇଗଲେଣି । ଦିହେଁ ଦୌଡ଼ୁଛନ୍ତି; ଶୁଣିଲେ ପଛରୁ ଦୁମ୍ ଦୁମ୍ ଶବ୍ଦ ହୋଇ ମେଦିନୀ କମ୍ପିବାକୁ ଲାଗିଲା । ଡଲ୍‌ସେଟା ପଛକୁ ଚାହିଁଦିଏ ତ ଦେଖିଲା ପଛରୁ ତା ମାଆ ଗୋଡ଼େଇ ଆସୁଛି । ତାର ଆଉ ସେ ରାଣୀରୂପ ନାହିଁ, ସେ ରାକ୍ଷସୀ ହୋଇ ମୁଣ୍ଡବାଳ ଝାମ୍ପୁରା କରି, ଏଡ଼େ ଏଡ଼େ ଦାନ୍ତ ଦେଖାଇ ଲହଲହ ଜିଭ କାଢ଼ି ଧାଇଁଆସୁଛି । ସେ ରୂପ ଦେଖି ଡଲ୍‌ସେଟା ପ୍ରମାଦ ଗଣିଲା । ସେ ଦେଖିଲା, ଏଠାରେ ସେ ଯଦି କିଛି ମାୟା ନ ଦେଖାଇବ, ମାଆ ସେ ରାଜକୁମାରଙ୍କୁ ନିଶ୍ଚୟ ଖାଇଯିବ । ସେ ବି ତା' ମାଆଠାରୁ ଗୋଟିଏ ଦୁଇଟି ମନ୍ତ୍ର ଶିଖିଥାଏ । ସଙ୍ଗେ ସଙ୍ଗେ ସେ ଏପରି ମନ୍ତ୍ର ପଢ଼ିଦେଲା ଯେ ଫୋରେଣ୍ଟିନୋ ଗୋଟିଏ ବଡ଼ ପୋଖରୀ ହୋଇଗଲେ ଏବଂ ଡଲ୍‌ସେଟା ଗୋଟିଏ ବତକ ହୋଇ ସେ ପୋଖରୀର ନୀଳ ଜଳରେ ଖେଳିଲା । ସେପଟୁ ତା ମାଆ ଧଇଁସଇଁ ହୋଇ ଦୌଡ଼ିଆସିବା ବେଳକୁ ସେ ପୋଖରୀ ପାଣିରେ ସୂର୍ଯ୍ୟକିରଣ ପଡ଼ି ଏପରି ଝଲମଲ ହେଉଥାଏ ଯେ ତା ଆଖି ଝଲସି ଉଠିଲା । ସେ ସେଠାରେ ଠିଆ ହୋଇ ଚାରିଆଡ଼କୁ ଚାହିଁ ଏ ଦୁଇଜଣଙ୍କୁ ଖୋଜିଲା । ଯେତେବେଳେ ସେ ଏମାନଙ୍କୁ ଦେଖିବାକୁ ପାଇଲା ନାହିଁ, ଜାଣିଗଲା ଯେ ତା ଝିଅ ଓ ରାଜକୁମାର ନିଜ ନିଜ ରୂପ ବଦଳାଇ ପୋଖରୀ ଓ ବତକ ହୋଇଯାଇଛନ୍ତି । ତେଣୁ ସେ ବତକଟିକୁ ଧରିବା ଲାଗି ରାଣୀ ହାତ ବଢ଼ାଇଲା । କିନ୍ତୁ ସଙ୍ଗେ ସଙ୍ଗେ ବତକଟି ଏ କୂଳରୁ ଆରକୂଳକୁ ଚାଲିଗଲା । ରାଣୀ ଯେତେବେଳେ ବତକ ଧରିବା ଲାଗି ଆରକୂଳକୁ ଯାଏ, ସେତେବେଳେ ବତକଟି ଏ କୂଳକୁ ଚାଲିଆସିଲା । ଏପଟ ସେପଟ ହୋଇ ରାଣୀ ହନ୍ତସନ୍ତ ହୋଇଗଲା, ତଥାପି ସେ ବତକ ଧରାଦେଲା ନାହିଁ । ଶେଷରେ ରାଣୀ ରକ୍ତଚାଉଳ ଚୋବାଇ ସେଠାରୁ ଫେରିଗଲା; କିନ୍ତୁ ଫେରିଯିବା ପୂର୍ବରୁ ଝିଅକୁ ଅଭିଶାପ ଦେଇଗଲା ଯେ ଫୋରେଣ୍ଟିନୋ ତା ରାଜ୍ୟକୁ ଗଲେ ତା ମାଆ ତାକୁ ଚୁମା ଦେଇ ଆଦର କରି ଘରକୁ ଡାକିନେବ, କିନ୍ତୁ ମାଆଠାରୁ ଚୁମା ଖାଇବା ମାତ୍ରେ ସେ ଡଲ୍‌ସେଟାକୁ ପାସୋରି ଦେବ ।

ରାଣୀ ଫେରିଯିବା ପରେ ଡଲ୍‌ସେଟା ନିଜ ରୂପ ଧରି ଠିଆହୋଇଗଲା ଏବଂ ଫୋରେଣ୍ଟିନୋଙ୍କୁ ବି ତାଙ୍କ ନିଜ ରୂପ ଦେଇଦେଲା । କିନ୍ତୁ ଡଲ୍‌ସେଟା

ଟା ମାଆର ଅଭିଶାପଟି ଶୁଣିଥାଏ। ତେଣୁ ସେ ଫୋରେଣ୍ଡିନୋଙ୍କ ହାତ ଧରି କାନ୍ଦି କାନ୍ଦି କହିଲା, "ହାୟ, ତୁମେ ନିଜ ଘରକୁ ଯିବା ସଙ୍ଗେ ସଙ୍ଗେ ମୋତେ ପାସୋରିଗଲେ ମୁଁ କଣ କରିବି ସତେ।" ଫୋରେଣ୍ଡିନୋ ତାକୁ ଆଶ୍ୱାସନା ଦେଇ କହିଲେ, "ତୁମେ କାହିଁକି ସେ ଅସୁରୁଣୀ ମାଆର କଥାକୁ ଏତେ ଭୟ କରୁଛ। ସେ ତ ରାଗରେ କ'ଣ ନାହିଁ କ'ଣ କହିଦେଲା; କିନ୍ତୁ ଯେଉଁ ଝିଅ ମୋତେ ବଞ୍ଚାଇବାଲାଗି ତାର ବାପମାଆ, ଘରଦ୍ୱାର ଛାଡ଼ି ମୋ ସହିତ ପଳାଇଆସିଲା, ମୁଁ ତାକୁ କିପରି ପାସୋରିଯିବି କହିଲ?" ଏପରି କଥାଭାଷା ହୋଇ ଯାଉ ଯାଉ ଦିହେଁ ଯାଇ ଫୋରେଣ୍ଡିନୋଙ୍କ ରାଜନଗର ପାଖରେ ପହଞ୍ଚିଗଲେ। ରାଜକୁମାର କିନ୍ତୁ ନଗର ଭିତରକୁ ନ ଯାଇ ଡଲ୍‌ସେଟାକୁ ନେଇ ନଗର ବାହାରେ ଥିବା ଗୋଟିଏ କୁଡ଼ିଆ ପାଖକୁ ଚାଲିଲେ। ଡଲ୍‌ସେଟା ପଚାରିଲା, "ଏ କୁଡ଼ିଆରେ ଆମର କି କାମ, ଚାଲ ତୁମ ନଅରକୁ ଯିବା।"

ସେ କୁଡ଼ିଆରେ ଜଣେ ବୁଢ଼ୀ ଥାଆନ୍ତି। ତାଙ୍କର ଜ୍ଞାନ ଓ ବୁଦ୍ଧି ଯୋଗୁଁ ନଗରର ସମସ୍ତେ ତାଙ୍କୁ ଆଦର ସମ୍ମାନ କରନ୍ତି। ଫୋରେଣ୍ଡିନୋ ସେହି ବୁଢ଼ୀ ପାଖରେ ଡଲ୍‌ସେଟାକୁ ରଖାଇଦେଇ କହିଲେ, "ଦେଖ ଡଲ୍‌ସେଟା, ମୁଁ ଏ ରାଜ୍ୟର ଯୁବରାଜ। ତୁମେ ମୋର ଯୁବରାଣୀ। ତୁମକୁ ରାଜସମ୍ମାନ ଦେଇ ବାଜା ବଜାଇ ବାଣ ଫୁଟାଇ ନଅରକୁ ଡାକିନେଉଣୁ ଚୋରଙ୍କ ପରି ଲୁଚାଇ ଛପାଇ ନେଇଯିବାକୁ ମୁଁ ପସନ୍ଦ କରେ ନାହିଁ। ତୁମେ ଏଠାରେ ଏ ମାଉସୀଙ୍କ ଘରେ ରହ; ମୁଁ ଯାଇ ମୋ ବାପାମାଆଙ୍କୁ କହି ମହୁରି ନାଗରା ବଜାଇ ପଟୁଆର ନେଇ ଆସିବି। ତୁମେ ସେହି ପଟୁଆରରେ ଆମ ନଅରକୁ ଯିବ।"

ଡଲ୍‌ସେଟା କିନ୍ତୁ କଇଁକଇଁ ହୋଇ କାନ୍ଦି ପକାଇଲା। "ମୋ ମାଆ ଯେଉଁ ଅଭିଶାପ ଦେଇଛି, ସେହି ଅଭିଶାପ ନିଶ୍ଚୟ ଆମ ପଛେ ପଛେ ଗୋଡ଼ାଇଛି। ତୁମେ ଯାଇ ଏତେଦିନ ପରେ ତୁମ ନଅରରେ ପହଞ୍ଚିଗଲେ ତୁମ ମାଆ ତୁମକୁ ଆଦର କରି ଚୁମା ଦେଇ ଭିତରକୁ ଡାକିନେବେ ଏବଂ ସେହି ମୁହୂର୍ତ୍ତରୁ ତୁମେ ମୋତେ ପାସୋରିଯିବ। ହାୟ! ମୁଁ କି ବୁଦ୍ଧି କରିବି କହ!!"

ଫୋରେଣ୍ଡିନୋ କହିଲେ, "ଆଗୋ, ନା, ନା। ମୁଁ କଦାପି ତାହା ହେବାକୁ ଦେବି ନାହିଁ। ମୋତେ ବିଶ୍ୱାସ କର। ମୁଁ ତୁମକୁ ମୋଟେ ପାସୋରିଯିବି ନାହିଁ।"

ଡଲ୍‌ସେଟା ବୁଢ଼ୀ ପାଖରେ ବସି ଲୁହ ଗଡ଼ାଉଥାଏ; ଫୋରେଣ୍ଡିନୋ ନଅରକୁ ଚାଲିଲେ। ଏତେ ଦିନ ପରେ ପୁଅ ନଅରକୁ ଫେରିଲା ଶୁଣି ତାଙ୍କ ମାଆ ଦାସୀ ପୋଇଲୀ ଧରି ପୁଅକୁ ପାଛୋଟି ନେବାଲାଗି ନଅର ଦୁଆରକୁ ଧାଇଁଆସିଲେ। ଦୁଆରମୁହଁରେ ପୁଅକୁ ନାନା ସମ୍ବର୍ଦ୍ଧନା ଜଣାଇ, ତାଙ୍କ ଦେହ ମୁଣ୍ଡ ଆଉଁସି ଦେଇ, ତାଙ୍କୁ ଛାତି ଉପରକୁ ଆଉଜାଇ ନେଇ ମାଆ ଯେମିତି ଚୁମା ଦେବାକୁ ଯାଆନ୍ତି, ଫୋରେଣ୍ଡିନୋ ସେମିତି ଦୂରକୁ ଘୁଞ୍ଚିଗଲେ। ମାଆ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କିରେ ଧନ, ଏ କି କଥା! ତୁ ମୋତେ ଠେଲିଦେଇ ଦୂରକୁ ଘୁଞ୍ଚିଯାଉଛୁ!!"

ଫୋରେଣ୍ଡିନୋ କହିଲେ, "ତୁମେ ବ୍ୟସ୍ତ ହୁଅନି ମାଆ, ମୁଁ ସବୁକଥା ବୁଝାଇ

କହିବି । ମୋର ଜଣେ ଅତି ଆପଣାର ଲୋକ ଆସି ନଗର ବାହାରେ ଅପେକ୍ଷା କରିଛନ୍ତି । ତାଙ୍କୁ ରାଜସମ୍ମାନ ଦେଇ ପଟୁଆର କରି ନଅରକୁ ଅଣାଯିବା କଥା । ତୁମେ ଆଗ ଯାଇ ପଟୁଆର ଲାଗି ବାଜାବାଲା, ବାଣବାଲା ପ୍ରଭୃତିଙ୍କୁ ଡକାଅ; ମୋ ବନ୍ଧୁ ଆସି ପହଞ୍ଚିବା ପୂର୍ବରୁ ତୁମେ ମୋତେ ଚୁମା ଦେଇଦେଲେ ତାଙ୍କର ଅମଙ୍ଗଳ ହେବ ।''

ସେତେବେଳକୁ ପୁଅକୁ ଦେଖିବା ଲାଗି ରାଜା ବି ଆସିଯାଇଥାନ୍ତି । ବାପା ମାଆ ପୁଅ କଥାରେ ବିଶ୍ୱାସ କରି ପଟୁଆର କଢ଼ାଇବା ଆୟୋଜନରେ ଲାଗିଗଲେ । ନଅର ଲୋକେ ବାଜା, ବାଣ, ଫୁଲଗଛ ଆଦି ଏକାଠି କରି ପଟୁଆର ଆୟୋଜନରେ ବ୍ୟସ୍ତ ଥିବାବେଳେ, ଫୋରେଣ୍ଡିନୋ ଟିକିଏ ବିଶ୍ରାମ ନେବାଲାଗି ଶେଯରେ ଗଡ଼ିପଡ଼ିଲେ । ଏତେ ଦିନର ପରିଶ୍ରମ, ଦିନରାତି ଚାଲିଚାଲି ଗୋଡ଼ହାତ ଦରଜ ହୋଇଯାଇଥାଏ, ତେଣୁ ସେ ଶେଯରେ ପଡୁ ପଡୁ ନିଘୋଡ଼ ନିଦରେ ଶୋଇପଡ଼ିଲେ । ଏଣେ ପଟୁଆରର ସକଳ ଆୟୋଜନ ଶେଷ ହେବାପରେ ମାଆ ପୁଅକୁ ଡାକିବାକୁ ଆସି ଦେଖନ୍ତି ତ ପୁଅ ଶେଯରେ ଘୁଙ୍ଗୁଡ଼ି ମାରୁଛି । ସେ ଏତେ ଦିନ୍ ଧରି ପୁଅକୁ ଟିକିଏ ଆଖି ପୂରାଇ ଦେଖିନଥିଲେ; ଏଇଲେ ଶୋଇଲା ପୁଅର ସୁନ୍ଦର ମୁହଁଟି ଦେଖି ମାଆ ଆଉ ସମ୍ଭାଳି ପାରିଲେ ନାହିଁ । ପୁଅ ପାଖରେ ବସି ତା ମୁଣ୍ଡ ଆଉଁସି ଦେଉ ଦେଉ ଛୋଟ ଚୁମାଟିଏ ଦେଇ କହିଲେ, ''ମୋ ପୁଅ କୋଟି ପରମାୟୁ ପାଇଥାଉ ।''

ମାଆଙ୍କ ଚୁମା ଖାଇ ଫୋରେଣ୍ଡିନୋଙ୍କ ନିଦ ଭାଙ୍ଗିଗଲା । କିନ୍ତୁ ସେତେବେଳକୁ ତାଙ୍କ ଉପରେ ଡଲ୍‌ସେଟାର ରାକ୍ଷସୀ ମାଆର ଅଭିଶାପ କାମ କରିସାରିଥିଲା । ସେ ଉଠି ବସୁ ବସୁ ମାଆ କହିଲେ, ''ଆରେ ବାପ, ପଟୁଆର ଜମିଲାଣି, ଆସ, ତୋ ବନ୍ଧୁଙ୍କୁ ଯାଇ ଡାକିଆଣିବୁ ।''

ମାଆ କଥା ଶୁଣି ସେ ପଚାରିଲେ, ''କି ପଟୁଆର ?'' ମାଆ କହିଲେ, ''ତୁ ପରା ତୋର ଆପଣାର ବନ୍ଧୁକୁ ଡାକି ଆଣିବାକୁ ଯିବୁ ବୋଲି ପଟୁଆର ବରାଦ କଲୁ !''

''ନା, ନା; ମୋର ଆଉ ଆପଣାର ବନ୍ଧୁ ବୋଲି ଅଲଗାରେ କିଏସେ ଅଛି ? କଣ ସେତେବେଳେ କହିଦେଲି, କାହିଁ ମୋର କିଛି ମନେପଡୁନାହିଁ । ମୋର ବନ୍ଧୁଫନ୍ଧୁ କେହି ଆସିନାହାନ୍ତି ।'' କହି ଫୋରେଣ୍ଡିନୋ ପୁଣି ନିଘୋଡ଼ ନିଦରେ ଶୋଇପଡ଼ିଲେ । ପଟୁଆର ବରାଦରେ ଯେଉଁ ବାଜାବାଲା ଓ ବାଣବାଲାମାନେ ଆସିଥିଲେ ସେମାନେ ଯେ ଯାହା ଘରକୁ ଫେରିଗଲେ । ସେହି ଦିନଠାରୁ ଫୋରେଣ୍ଡିନୋଙ୍କର ଡଲ୍‌ସେଟା କଥା ଆଉ ମନେପଡ଼ିଲା ନାହିଁ ।

ତେଣେ ଡଲ୍‌ସେଟା ବୁଢ଼ୀର କୁଡ଼ିଆଟିରେ ବସି ଲୁହ ଗଡ଼ାଇଚାଲିଥାଏ । ବୁଢ଼ୀ କିନ୍ତୁ ଭାରି ଚତୁରୀ । ସେ ଡଲ୍‌ସେଟା ମୁହଁରୁ ସବୁକଥା ଶୁଣି ଦିନେ ତାକୁ ନେଇ ରାଜନଅର ପାଖକୁ ଚାଲିଗଲେ । ଦିହେଁ ନଅର ଫାଟକ ପାଖରେ ଠିଆହୋଇଛନ୍ତି, ଏ ସମୟରେ ଫୋରେଣ୍ଡିନୋ ନଅରରୁ ବାହାରି ନଗର ବୁଲିବା ଲାଗି ଚାଲିଗଲେ ।

ଗଲାବେଳେ ସେ ଏହି ଦୁଇଜଣଙ୍କୁ ଦେଖିଲେ ସତ, କିନ୍ତୁ ଏମାନଙ୍କୁ ମୋଟେ ଚିହ୍ନିପାରିଲେ ନାହିଁ। ଡଲ୍‌ସେଟା ଏଥର ସ୍ପଷ୍ଟ ବୁଝାପାରିଲା ଯେ ତା ମାଆର ଅଭିଶାପ କାମ କରୁଥିବା ପର୍ଯ୍ୟନ୍ତ ତା ଜୀବନରେ ଆଉ ସୁଖ ନାହିଁ। ସେ ଦୁଃଖରେ ବୁଢ଼ୀକୁ କହିଲା, "ଦେଖିଲ ମାଉସି, ଯେ ମୋତେ ଏତେ ଭଲପାଉଥିଲେ, ସେ ମୋତେ ଦେଖି ବି ଚିହ୍ନିପାରିଲେ ନାହିଁ। ଏହାଠାରୁ ବଳି ଦୁଃଖ ଆଉ କଣ ଅଛି? ମୋ ମାଆଙ୍କ ଅଭିଶାପରୁହିଁ ଏସବୁ ଫଳୁଛି; ତାକୁ ପରା ନାନା ଗୁଣିବିଦ୍ୟା ଜଣା।"

ବୁଢ଼ୀକୁ ବି କିଛି କିଛି ଗୁଣିବିଦ୍ୟା ଜଣାଥାଏ। ସେ ଡଲ୍‌ସେଟା ଦୁଃଖରେ ଦୁଃଖୀ ହୋଇ କହିଲା, "ମାଆ ଲୋ, ତୁ ଚିନ୍ତା କରନି, ମୁଁ ଆଜି ତୋ ପାଇଁ ଗୋଟିଏ ବ୍ୟବସ୍ଥା କରୁଛି।" ସେହି ଦିନ ସନ୍ଧ୍ୟାରେ ସେ ନିଜ ଗୁଣିବଳରେ ନଗର ବାହାରେ ରାଜମହଲ ପରି ଗୋଟିଏ ସୁନ୍ଦର ପ୍ରାସାଦ ଗଢ଼ିଦେଲା। ଡଲ୍‌ସେଟା ଓ ବୁଢ଼ୀ ସେ ପ୍ରାସାଦରେ ଥାଆନ୍ତି, ରାତି ପାହି ଦିନ ହେଉ ହେଉ ନଗର ଭିତରେ ଏ ନୂଆ ପ୍ରାସାଦଟି କଥା ପ୍ରଚାର ହୋଇଗଲା। କିଏସେ ଏପରି ରାତାରାତି ଗୋଟିଏ ପ୍ରାସାଦ ତୋଳିଦେଲା ବୋଲି ଦେଖିବାଲାଗି ସେଠାକୁ ଅନେକ ଲୋକ ଚାଲିଲେ। ଏ ଖବର ନଅରରେ ପହଞ୍ଚୁ ପହଞ୍ଚୁ ରାଜା ବି ପୁଅକୁ କହିଲେ, "କୁମାର, କିଏସେ ଏପରି ଏକ ପ୍ରାସାଦ ଗଢ଼ିଛି, ଯାଇ ଦେଖିଆସିଲ।"

ନୂଆ ପ୍ରାସାଦଟି ଦେଖିବା ଲାଗି ସଙ୍ଗେ ସଙ୍ଗେ ଫୋରେଣ୍ଟିନୋ ଘୋଡ଼ା ଛୁଟାଇଦେଲେ। ସେ ଯାଇ ସେଠାରେ ପହଞ୍ଚିବାବେଳକୁ ବୁଢ଼ୀ ଡଲ୍‌ସେଟାକୁ ବେଶଭୂଷାକରି ପ୍ରାସାଦର ଉପର ମହଲାରେ ବସାଇଦେଇଥାଏ। ରାଜକୁମାର ତାକୁ ଦେଖି ଭାବିଲେ, 'ଏ ଝିଅଟି ତ କାଲି ଜଣେ ବୁଢ଼ୀକୁ ସାଙ୍ଗରେ ଧରି ଆମ ନଅର ଦୁଆରେ ବସିଥିଲା। ଆଜି କଣ ଆସି ଏ ନୂଆ ପ୍ରାସାଦ ଭିତରେ ବସି ପବନ ଖାଉଛି। ନିଶ୍ଚୟ କେହି ଗୁଣିଆଣୀ କି ଅସୁରୁଣୀ ଏ ଝିଅଟାକୁ ଆଣି ଏ ଭିତରେ ବାନ୍ଧି ରଖିଛି।' ଏହା ଭାବି ସେ ପ୍ରାସାଦ ଭିତରେ ପଶି ଡଲ୍‌ସେଟାକୁ ସବୁ କଥା ପଚାରିବାକୁ ବସିଛନ୍ତି, ବୁଢ଼ୀ ସେ ଭିତରେ କେଉଁଠି ଲୁଚିଥିଲା କେଜାଣି, ଏଡ଼ିକି ବଡ଼ ଠେଙ୍ଗଣି ଧରି ତାଙ୍କ ଉପରକୁ ମାଡ଼ି ଆସିଲା। ତଳେ ଠିଆହୋଇ ଦେଖୁଥିବା ଲୋକେ ହାଁ-ହାଁ କରୁଛନ୍ତି, ବୁଢ଼ୀ ତାର ଆଖିବୁଜି ରାଜକୁମାରଙ୍କ ଉପରେ ପାହାର ଉପରେ ପାହାର ବସାଇଦେଇଗଲା। ଫୋରେଣ୍ଟିନୋ ଠେଙ୍ଗା ପ୍ରହାର ଖାଇ ମାଆଲୋ ବାପାଲୋ ହୋଇ ତଳକୁ ଓହ୍ଲାଇ ଆସିଲେ। ରଜାପୁଅ ହେଲେ କଣ ହେଲା, ପର ଘରେ ପଶି ମୁରବିଙ୍କ ଅଜାଣତରେ ପର ଝିଅ-ବୋହୂଙ୍କ ସଙ୍ଗରେ କଥାଭାଷା କଲେ ଏପରି ଦଣ୍ଡ ମିଳିବା ଉଚିତ ବୋଲି ଭାବି, ସେ ଚୁପ୍ ରହିଲେ। କିନ୍ତୁ ଦେଖଣାହାରୀମାନେ ଏକଥା ସହିପାରିଲେ ନାହିଁ। ସେମାନେ ଯାଇ ରାଜାଙ୍କ ଆଗରେ ଫେରାଦ କଲେ ଯେ ଏ ଅନ୍ୟାୟର ବିଚାର କରାଯାଉ।

ପୁଅ ମାଡ଼ ଖାଇ ଆସିଛି ଶୁଣି ରାଜା ଭୀଷଣ ରାଗିଯାଇ ବୁଢ଼ୀ ଓ ଡଲ୍‌ସେଟାକୁ ଧରିଆଣିବାଲାଗି ପିଆଦା ପଠାଇଦେଲେ। ପିଆଦାମାନେ ଯାଇ ସେ ଦୁଇଜଣଙ୍କୁ ଧରିଆଣିଲେ। ବିଚାରାଳୟରେ ରାଜାଙ୍କ ପାତ୍ର, ମନ୍ତ୍ରୀ, ପୁରୋହିତଙ୍କ ସମେତ

ବହୁ ଲୋକ ଆସି ଗୁଣ୍ଡହେଲେ। ସେ ସବୁ ଲୋକଙ୍କୁ ଆହୁରି ପାଖକୁ ଆସ ବୋଲି ଡାକ ଦେଇ ବୁଢ଼ୀ କହିଲା,

"ମନ୍ତ୍ରୀ ପୁରୋହିତ ସଙ୍ଗତରେ ଆସ ସବୁ ସଭାଜନମାନେ
ନଅରରେ ଆଜି ହେବ ବଡ଼ ଭୋଜି ବସ ଯେ ଯାହାର ସ୍ଥାନେ।"

ଏ ଗୀତ ଶୁଣି ରାଜା ରାଗରେ ଗର୍ଜନ କରି ଉଠିଲେ, "ଚୁପ୍ କର ମୂର୍ଖ! ମୁଁ ମୋ ନଅରରେ ଭୋଜି କରୁଛି ବୋଲି ସେମାନେ ଆସିନାହାନ୍ତି; ସେମାନେ ଆସିଛନ୍ତି ତୋର ବିଚାରଣା କରିବାକୁ। ତୁ କାହିଁକି ଆମ କୁମାରକୁ ମାରିଲୁ କହ।"

ବୁଢ଼ୀ କିଛି କହିବା ପୂର୍ବରୁ ଡଲ୍‌ସେଟା ସଭାଜନଙ୍କ ମଝିରେ ଠିଆହୋଇଗଲା। ତାର ରୂପ-ଲାବଣ୍ୟରେ ଲୋକଙ୍କ ଆଖି ଝଲସିଗଲା। ରାଜକୁମାରଙ୍କ ପାଖକୁ ଦୌଡ଼ିଯାଇ ସେ କୋମଳ ମଧୁର ସ୍ୱରରେ ଗାଇଲା –

"ହରଣ କଲ ମୋ ହୃଦୟ ନାଗର ବରଣ କଲି ମୁଁ ତୁମକୁ;
ବାପ ମାଆ ଛାଡ଼ି ସଙ୍ଗତେ ଅଇଲି ଧନ୍ୟ ଧନ୍ୟ ତୁମ ପ୍ରେମକୁ!
ତୁମେ ଯେତେବେଳେ ପୋଖରୀ ହୋଇଲ ମୁଁ ତହିଁ ହୋଇଲି ବତକ
ମାଆ ଚୁମା ଖାଇ ସବୁ ଭୁଲିଗଲ ? ମନେ ପଡୁନି କି ଏତକ ?"

ଏ ଗୀତରେ ବୁଢ଼ୀ ଗୋଟିଏ ମନ୍ତ୍ରବଳ ରଖି ଦେଇଥିଲା। ତେଣୁ ଏ ଗୀତ କାନରେ ପଡୁ ପଡୁ ଫୋରେଣ୍ଡିନୋଙ୍କ ଉପରୁ ଗୁଣିଆଣୀ ରାଣୀର ଅଭିଶାପ ଦୂରେଇଗଲା। ସବୁ ପାଶୋରା କଥାଗୁଡ଼ାକ ତାଙ୍କର ମନେପଡ଼ିଗଲା। ସେ ସଙ୍ଗେ ସଙ୍ଗେ ଅତି ଆଦରରେ ଡଲ୍‌ସେଟାର ହାତ ଧରି ତାକୁ ରାଜାଙ୍କ ପାଖକୁ ନେଇଗଲେ ଏବଂ ସବୁକଥା ଖୋଲି କହିଲେ। ସଭାଜନେ ଏସବୁ ଶୁଣି ବୁଢ଼ୀ ଓ ଡଲ୍‌ସେଟାକୁ ପ୍ରଶଂସା ନକରି ରହିପାରିଲେ ନାହିଁ। ଏଡ଼େ ସୁନ୍ଦର ବୋହୂଟିଏ ପାଇଛନ୍ତି ଦେଖି ରାଜମାତା ନଅରରେ ଏକ ବିରାଟ ଭୋଜିର ଆୟୋଜନ କରିବସିଲେ। ଫୋରେଣ୍ଡିନୋ ଓ ଡଲ୍‌ସେଟାଙ୍କ ବିବାହ-ଉତ୍ସବରେ ନଗରବାସୀ ବହୁଦିନ ଆନନ୍ଦ-ଉତ୍ସବରେ ବୁଡ଼ିରହିଲେ।

## ବିଶ୍ୱାସଘାତକ

ଗୋଟିଏ ଜଙ୍ଗଲୀ ଗାଆଁରେ ଗଉଡ଼ ଗଉଡୁଣୀ ଦୁଇପ୍ରାଣୀ ଥାଆନ୍ତି। ମେଣ୍ଢା ଛେଳି ଜଗି ସେମାନଙ୍କର ଦିନ ବିତିଯାଏ। ଦିନେ ରାତିରେ ସେମାନେ ଦୁଆର କିଳି ଖାଇବସୁଛନ୍ତି, ଏ ସମୟରେ କେହିଜଣେ ଆସି କବାଟରେ ହାତ ମାରିଲା। ଅବେଳରେ କିଏ ଅତିଥି ଆସିଲାବୋଲି ଗଉଡ଼ କବାଟ ଖୋଲିଦିଏ ତ ସ୍ୱୟଂ ରାଜା ଘର ଭିତରକୁ ପଶିଆସିଲେ। ଜଙ୍ଗଲରେ ଶିକାର ପଛରେ ଦୌଡୁ ଦୌଡୁ ସେ ବାଟବଣା ହୋଇ ଏ ଗାଆଁକୁ ପଳାଇଆସିଥାନ୍ତି। ଗଉଡ଼ ଗଉଡୁଣୀ ରାଜାଙ୍କ ପରିଚୟ ପାଇ ମହାଆନନ୍ଦରେ ତାଙ୍କର ଚର୍ଚ୍ଚା କଲେ। ଘରେ ଯାହା କିଛି ଥିଲା,

ସେତକ ରାଜାଙ୍କୁ ଖାଇବାକୁ ଦେଇ ମେଣ୍ଢାଶାଳ ପାଖରେ ତାଙ୍କ ଲାଗି ପାଳକୁଟାରେ ଖଣ୍ଡିଏ ଶେଯ ପାରିଦେଲେ। ରାଜା କୌଣସି ପ୍ରକାରେ ରାତିଟା କଟାଇଦେବା ଲାଗି ସେଠାରେ ଟିକିଏ ଗଡ଼ିପଡ଼ିଲେ। ସେତେବେଳକୁ ଗଉଡୁଣୀର ଦଶମାସ ଗର୍ଭ। ରାଜାଙ୍କୁ ଛାଇନିଦ ଆସିଛି କି ନାହିଁ ଗଉଡୁଣୀର ଗର୍ଭକଷ୍ଟ ଆରମ୍ଭ ହୋଇଗଲା ଏବଂ ସେହି ରାତିରେ ତାର ସୁସ୍ଥ ସବଳ ପୁଅଟିଏ ଜନ୍ମ ହେଲା। ରାଜାଙ୍କର କୌଣସି ପୁଅଝିଅ ନ ଥାନ୍ତି; ସେ ଏହି କଅଁଳା ପୁଅଟିକୁ ଦେଖି ଏତେ ଖୁସି ହୋଇଗଲେ ଯେ, ସକାଳେ ନିଜ ନଗରକୁ ଫେରିଯିବାବେଳେ ଗଉଡ଼ ଗଉଡୁଣୀକୁ କହିଗଲେ, "ଆରେ, ମୁଁ ତୁମ ଚର୍ଚ୍ଚାରେ ଖୁବ୍ ସନ୍ତୁଷ୍ଟ ହୋଇଛି। ତୁମର ଏ ପୁଅଟି ତ ମୋ ଆଗରେ ଜନ୍ମ ହୋଇଛି; ମୁଁ ଏହାକୁ ମୋର ଧରମପୁଅ କରିନେଉଛି। ବର୍ତ୍ତମାନ ସେ ତୁମ ପାଖରେ ରହୁ; କିନ୍ତୁ ପାରିଲାର ହୋଇଗଲେ ତାକୁ ଆମ ନଅରକୁ ପଠାଇଦେବ ଯେ, ସେ ସେଠାରେ ଆରାମରେ ରହିଯିବ।"

ଗଉଡ଼ ଗଉଡୁଣୀ ରାଜାଙ୍କୁ ଧନ୍ୟବାଦ ଦେଇ କହିଲେ, "କିନ୍ତୁ ମଣିମା, ସେତେ ଦିନଯାଏ କ'ଣ ଏ ଗରିବଙ୍କ କଥା ମନେରହିବ?"

ରାଜା କହିଲେ, "ଆରେ ସତ କଥା; ମୁଁ ଭୁଲିଯାଇପାରେ, ତେଣୁ ଏ ସୁନାହାରଟି ରଖିଥାଅ। ପୁଅକୁ ପଠାଇବାବେଳେ ତା ବେକରେ ଏ ହାରଟି ଲଗାଇ ପଠାଇଦେବ ଯେ ମୁଁ ତାକୁ ଦେଖୁ ଦେଖୁ ଚିହ୍ନିପକାଇବି।" ଏହା କହି ରାଜା ବେକରୁ ଗୋଟିଏ ସୁନାହାର କାଢ଼ି ଗଉଡ଼ ହାତରେ ଧରାଇଦେଇ ସେଠାରୁ ଚାଲିଗଲେ। ଗଉଡ଼ର ପୁଅଟି ବାପାମାଆ ପାଖରେ ରହି ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲା। ବଡ଼ ହୋଇ ସେ ବାପାମାଆଙ୍କୁ ମେଣ୍ଢା ଚରାଇବା କାମରେ ସାହାଯ୍ୟ କଲା। ବଣ-ଜଙ୍ଗଲ ବୁଲି ମେଣ୍ଢା ଚରାଉ ଚରାଉ ନାନା ଜାତିର ଚଢ଼େଇଙ୍କ ରାବ ଶୁଣି ଶୁଣି ସେ ଚଢ଼େଇଙ୍କ ଭାଷା ଶିଖିଗଲା। ପୁଅର ଏସବୁ ଭଲ ଗୁଣ ଦେଖି ତା ମାଆ ତାକୁ ଆଉ ପାହାଡ଼-ପର୍ବତର କଣ୍ଟା ଖୁଣ୍ଟ ଭିତରେ ମେଣ୍ଢା ଚରାଇବାକୁ ନ ପଠାଇ ତା ବେକରେ ରାଜାଙ୍କ ସୁନାହାରଟି ଗଳାଇ ଦେଇ ରାଜଧାନୀକୁ ପଠାଇଦେଲା। ସେ କିପରି ରାଜାଙ୍କର ଧରମପୁଅ ହୋଇଛି, ସେ କଥା ବୁଝାଇ ଦେବା ପରେ ମାଆ ବାପା ତାକୁ ବିଦାୟ ଦେଇ କହିଲେ, "ବାପରେ, କୁଞ୍ଚୁକୁଞ୍ଚିଆ, ମାଗୁରନିଶୁଆ ଛାତିରେ ନ ଥାଏ ବାଳ, ଏମାନଙ୍କୁ କେବେ ପରତେ ଯିବୁନି ଜିଇଥିବୁ ଯେତେ କାଳ।" ସେମାନେ ତାକୁ ନାଆଁ ଦେଇଥିଲେ ଆନାକ୍ଷେସିଓ।

ବାପା-ମାଆଙ୍କ କଥାରେ ହଁ ଭରି ଆନାକ୍ଷେସିଓ ଘରୁ ବାହାରିପଡ଼ିଲା, ବାଟରେ ଜଳଖିଆ କରିବା ଲାଗି ସାଙ୍ଗରେ କିଛି ରୁଟି ଓ ଛେନା ଧରିଥାଏ। ଚାଲୁ ଚାଲୁ ହାଲିଆ ହୋଇଯାଇ ଟିକିଏ ଜଳଖିଆ କରିବ ବୋଲି ଗୋଟିଏ ଗଛମୂଳେ ବସିପଡୁଛି, ଦେଖିଲା ତା ଆଡ଼କୁ ପ୍ରାୟ ତାହାରି ବୟସର ଜଣେ ଲୋକ ଆସୁଛି। ଲୋକଟିର ମୁଣ୍ଡବାଳ କୁଞ୍ଚୁକୁଞ୍ଚିଆ; ମୁହଁରେ ମାଗୁର ନିଶ, ଦାଢ଼ି ଉଠି ନ ଥାଏ। ହସି ହସି ଆସି ସେ ଆନାକ୍ଷେସିଓକୁ ପଚାରିଲା, "କିହୋ, ଏ ଗଛମୂଳରେ କଣ ବସିପଡ଼ିଲ?"

ଆନାକ୍ଷେସିଓର ସେତେବେଳକୁ ବାପାମାଆ ଦେଇଥିବା ଉପଦେଶ ଆଉ

ମନେନଥାଏ। ସେ ଏ ଆଗନ୍ତୁକ ସହିତ ବନ୍ଧୁତା କରି କହିଲା, "ଟିକିଏ ଜଳଖିଆ କରିବି ବୋଲି ଏଇଠି ଛାଇ ଦେଖି ବସିପଡ଼ିଲି; ଆସୁନା, ତୁମେ ବି ଟିକିଏ ବସିବ।"

ଲୋକଟି କହିଲା, "ଏଇଠି କାହିଁକି ବସିବା, ଆସ, ଟିକିଏ ଆଗରେ ଗୋଟିଏ କୂଅ ଅଛି। ସେଇଠି ଭଲ ଛାଇ ପାଇବ। ଜଳଖିଆ ଖାଇବ, ପାଣି ବି ପିଇବ।"

ଦିହେଁ ସେହି କୂଅ ପାଖକୁ ଚାଲିଲେ। କୂଅମୂଳେ ବସି ଜଳଖିଆ ଖାଉ ଖାଉ ଆନାଷ୍ଟେସିଓ ସେ ଲୋକଟିକୁ ଖଣ୍ଡେ ଛେନା ଖାଇବାକୁ ଦେଲା। ଲୋକଟି ଛେନା ଖାଉ ଖାଉ ପଚାରିଲା, "ତୁମେ କେଉଁଠିକି ଯାଉଛ?" ଆନାଷ୍ଟେସିଓ କହିଲା, "ମୁଁ ରାଜାଙ୍କ ଦରବାରକୁ ଯାଉଛି। ମୁଁ ଜନ୍ମ ହେବାଦିନ ସେ ଆମ ଘରେ ଅତିଥି ହୋଇଥିଲେ। ସେତେବେଳୁ ସେ ମୋତେ ଧରମପୁଅ କରି ନେଇଛନ୍ତି। କହିଥିଲେ ମୁଁ ବଡ଼ ହେଲେ ତାଙ୍କ ନଅରକୁ ଯିବି। ସେଥିପାଇଁ ଏଇନେ ଯାଉଛି।"

ଲୋକଟି ପଚାରିଲା, "ଆହେ, ଏତେ ଦିନ ତଳର କଥା। ରାଜାଙ୍କର ଆଉ ମନେ ଥିବଟି?"

ଆନାଷ୍ଟେସିଓ ନିଜ ପୋଷାକ ଖୋଲି ସୁନାହାରଟି ଦେଖାଇ କହିଲା, "ସେ ପରା ଏ ହାରଟି ଦେଇଯାଇଥିଲେ; ଏ ହାର ଦେଖିଲେ ସେ ମୋତେ ଚିହ୍ନିପକାଇବେ।" ଏକଥା ଶୁଣି ସେ ମାଗୁରନିଶୁଆ ମନକୁ ଏକ ଖଳବୁଦ୍ଧି ଆସିଲା। ସେ କହିଲା, "ଭଲକଥା, ମୁଁ ବି ତ ରାଜାଙ୍କ ପାଖକୁ ଯାଉଛି। ଦିହେଁ ଏକାଠି ଚାଲିଯିବା।" ଜଣେ ସାଙ୍ଗ ମିଳିଗଲା ଦେଖି ଆନାଷ୍ଟେସିଓ ଖୁସି ହୋଇଗଲା। ଜଳଖିଆ ଶେଷ ହେଉ ହେଉ ପାଣି ପିଇବା କଥା ଉଠିଲା। ମାଗୁରନିଶୁଆ କହିଲା, "ଆରେ ଭାଇ, ଏ କୂଅଟିରେ ଖୁବ୍ କମ୍ ପାଣି ଅଛି। ଅଳିଆ ବି ପଡ଼ିଛି। ତୁମେ ଯଦି ଗୋଟିଏ କାମ କରନ୍ତ, ତେବେ ଭଲ ପାଣିମୁନ୍ଦିଏ ପିଇବାକୁ ମିଳନ୍ତା।"

ଆନାଷ୍ଟେସିଓ ପଚାରିଲା, "କ'ଣ କହୁନା?" ମାଗୁରନିଶୁଆ କହିଲା, "ମୋ ପାଖରେ ଦଉଡ଼ି ଅଛି। ତୁମେ ଅଣ୍ଟାରେ ଦଉଡ଼ି ବାନ୍ଧି କୂଅ ଭିତରକୁ ଚାଲିଯାଅ, ହାତରେ ଡାଳ ଧରିଥିବ। ଅଳିଆ ଆଡ଼େଇ ଭଲ ପାଣିତାଳେ ଆଣିବ, ମୁଁ ତୁମକୁ ଦଉଡ଼ିରେ ଉପରକୁ ଟାଣି ଆଣିବି।"

ଆନାଷ୍ଟେସିଓ ବିଚରା ସରଳ ଲୋକ। ସେ ଏ ପ୍ରସ୍ତାବରେ ରାଜି ହୋଇ ଅଣ୍ଟାରେ ଦଉଡ଼ି ବାନ୍ଧି କୂଅ ଭିତରେ ପଶିଗଲା। ଡାଳରେ ତାଳେ ପାଣି ଧରି ସେ ଡାକ ପକାଇଲା, "ଭାଇ, ପାଣି ଭରିଲିଣି, ଏଥର ମୋତେ ଉପରକୁ ଟେକ।" କିନ୍ତୁ ସେ ବିଶ୍ୱାସଘାତକ ମାଗୁରନିଶୁଆ କହିଲା, "ମୋର ତ ଆଉ ଶୋଷ ନାହିଁ, ତତେ ଉପରକୁ ଟେକି ମୁଁ କି ଲାଭ ପାଇବି?"

ଏ ନିଷ୍ଠୁର କଥା ଶୁଣି ଆନାଷ୍ଟେସିଓ ଛାନିଆ ହୋଇଗଲା। ଘରୁ ବାହାରିବାବେଳେ ବାପମାଆ ଯେଉଁ ଉପଦେଶ ଦେଇଥିଲେ, ସେ ଉପଦେଶ ତାର ଏବେ ମନେ ପଡ଼ିଗଲା। କଣ ଆଉ କରିବ, ଖାପଚରେ ତ ପଡ଼ିଛି; ତେଣୁ ନାନା ବିନୟ କରି ସେ କହିଲା, "ଆରେ ବାବୁ, ତୁମ ଧର୍ମ ଥାଉ, ମୋତେ ଏ କୂଅ ଭିତରୁ

ବାହାର କରିଦିଅ।''

ମାଗୁରନିଶୁଆ କହିଲା, ''ତୁ ଯଦି ଧର୍ମ କଥା କହିଲୁଣି, ତେବେ ଧର୍ମକୁ ସାକ୍ଷୀ ରଖି ତୁ ଗୋଟିଏ କାମ କର, ତେବେ ମୁଁ ତୋତେ କୂଅରୁ ବାହାର କରିଦେବି।'' କୌଣସି ପ୍ରକାରେ ପ୍ରାଣଟା ରହିଯାଉ ଭାବି ଆନାକ୍ଷେସିଓ କହିଲା, ''ତୁମର ସବୁ କଥାକୁ ମୁଁ ରାଜିଅଛି, ତୁମେ ଯାହା କହିବ, ମୁଁ ତା କରିବି।''

''ବେଶ୍, ତୁ ଶପଥ କରି କହ ଯେ, ଉପରକୁ ଆସିଲେ ମୋତେ ତୋ ସୁନାହାରଟା ଦେଇଦେବୁ ଏବଂ ମଲା ପର୍ଯ୍ୟନ୍ତ ଏକଥା ଆଉ କାହାରିକି କହିବୁ ନାହିଁ।''

ଆନାକ୍ଷେସିଓ ସଙ୍ଗେ ସଙ୍ଗେ ଶପଥ କରିପକାଇଲା ଏବଂ ମାଗୁରନିଶୁଆ ତାକୁ ଉପରକୁ ଟାଣି ଆଣିବା ମାତ୍ରେ ସେ ନିଜ ସୁନାହାରଟି ତାକୁ ଦେଇଦେଲା। ତା'ପରେ ଦୁହେଁ ରାଜଧାନୀକୁ ଚାଲିଲେ। ସେ ଦିନ ରାଜଦରବାରରେ ଯାଇ ପହଞ୍ଚୁ ପହଞ୍ଚୁ ମାଗରୁନିଶୁଆ ରାଜାଙ୍କୁ ସୁନାହାରଟି ଦେଖାଇ ସେ ତାଙ୍କର ଧରମପୁଅ ବୋଲି ଦାବୀ କଲା। ଏତେଦିନ ପରେ ରାଜା ସୁନାହାର ଦେଖି ବଡ଼ ଖୁସି ହୋଇଗଲେ; ମାଗୁରନିଶୁଆର ରୂପବେଶରେ ସନ୍ତୁଷ୍ଟ ନ ହେଲେ ବି ନିଜ ସତ୍ୟ ରକ୍ଷା କରି ତାକୁ ଧରମପୁଅ ଆସନରେ ବସାଇଦେଲେ। ତା'ପରେ ଆନାକ୍ଷେସିଓକୁ ସେଠାରେ ଦେଖି ସେ ପଚାରିଲେ, ''ଏ ପିଲାଟି କିଏସେ ?''

ମାଗୁରନିଶୁଆ କହିଲା, ''ମଫସଲିଆଟେ, ଏଇଠି ନଅର ଆଗରେ ବୁଲୁଥିଲା, ମୋ ସହିତ ଭିତରକୁ ପଶିଆସିଛି।'' ଆନାକ୍ଷେସିଓ ସବୁ ଶୁଣି ବି ନୀରବ ରହିଲା; କାରଣ ସେ ଶପଥ କରିଛି। ଯାହାହେଉ ରାଜା ତା ରୂପ ଦେଖି ତା ଉପରେ ସନ୍ତୁଷ୍ଟ ହୋଇ କହିଲେ, ''ଏ ବି ଆମ ନଅରରେ ରହୁ। କାମଦାମ କରିବ; ଏଠାରେ ଖିଆପିଆ କରି ଆରାମରେ ରହିଯିବ।''

ସେହିଦିନଠାରୁ ଆନାକ୍ଷେସିଓ ନଅରରେ ରହିଗଲା। ଦିନେ ରାଜା ଓ ତାଙ୍କ ଧରମପୁଅ ଗୋଟିଏ କକ୍ଷରେ ବସି ଆରାମ କରୁଛନ୍ତି, ଆନାକ୍ଷେସିଓ ସେ ଘର ଝାଡୁ କରିବାକୁ ଆସିଲା। ସେ ଘର ଝାଡୁ କରୁ କରୁ ଦେଖିଲା ସେ ଘର ଭିତରେ ଯୋଡ଼ିଏ ଘରଚଟିଆ ଖୁମ୍ପାଖୁମ୍ପି ହୋଇ କଳି କରୁଛନ୍ତି। ଚଢ଼େଇଙ୍କର କଥାର ଅର୍ଥ ବୁଝି ସେ ଖିଲିଖିଲି ହୋଇ ହସିଉଠିଲା। ଏଥିରେ ରାଜାଙ୍କର ବିଶ୍ରାମରେ ବ୍ୟାଘାତ ଲାଗିବାରୁ ସେ ରାଗରେ ପଚାରିଲେ, ''ଏ, ମିଛରେ କାହିଁକି ହସୁଛୁ ?''

ତାକୁ ନଅରରୁ ତଡ଼ିଦେବା ଲାଗି ଏ ଗୋଟିଏ ସୁଯୋଗ ମିଳିଛି ଦେଖି ମାଗୁରନିଶୁଆ କହିଲା, ''ମଣିମା, ଏ ଲୋକଟା ମୋତେ ପରିହାସ କରି ଏପରି ହସୁଛି।''

ରାଜା ଆହୁରି ରାଗିଯାଇ କହିଲେ, ''କିରେ, ବାହାରେ ବୁଲୁଥିଲୁ, ଏବେ ନଅରରେ ରହି ଏହି ଗୁଣ ବିକାଶୁଛୁ ?''

ଆନାକ୍ଷେସିଓ କହିଲା, ''କ୍ଷମା କରନ୍ତୁ ମଣିମା, ମୁଁ ତାଙ୍କୁ ମୋଟେ ପରିହାସ କରିନାହିଁ। ଏ ଯେଉଁ ଚଢ଼େଇ ଦୁଇଟି କଳି କରୁଛନ୍ତି, ଏମାନଙ୍କ କଥା ଶୁଣି

ମୋତେ ହସମାଡ଼ିଲାରୁ ମୁଁ ହସିଦେଲି।''

ରାଜା ପଚାରିଲେ, ''ତୁ ଚଢ଼େଇଙ୍କ କଥା ବୁଝିପାରୁଛୁ? ଏମାନେ କାହିଁକି କଳି କରୁଛନ୍ତି କହିଲୁ।''

ଆନାଷ୍ଟେସିଓ କହିଲା, ''ମଣିମା, ଏ ଅଣିରା ଚଢ଼େଇଟି ସେ ମାଈ ଚଢ଼େଇକୁ ପଚାରୁଛି, ତୁ କାହିଁକି ଏତେ ଡେରିରେ ଘରକୁ ଆସିଲୁ? ମାଈ ଚଢ଼େଇ କହୁଛି, ସେ ଗୋଟିଏ ରଜାଘରକୁ ଯାଇଥିଲା ଯେ ସେଠାର ରାଜକୁମାରୀ ମୁଣ୍ଡ କୁଣ୍ଡାଉଥିଲେ, ସେ ରାଜକୁମାରୀଙ୍କ ନାମ ସ୍ୱର୍ଣ୍ଣକେଶୀ; ତାଙ୍କ ମୁଣ୍ଡର ବାଳ କାଳେ ରେଶମ ପରି କଅଁଳ ଆଉ ସୁନା ପରି ଚକଚକ। ସେ ମୁଣ୍ଡ କୁଣ୍ଡାଇବା ପରେ ଏ ମାଈ ଚଢ଼େଇ ତାଙ୍କର ଛଟିବାଳ ମେଞ୍ଚାଏ ଆଣି ଛୁଆଙ୍କ ପାଇଁ ଶେଯ ତିଆରି କରିବ ବୋଲି ସେଠାରେ ଜଗିଥିଲା, ତେଣୁ ତାର ଡେରି ହୋଇଗଲା।''

ଏକଥା ଶୁଣି ରାଜା ପରମ ସନ୍ତୋଷରେ କହିଲେ, ''ବାଃ, ତୋଠାରେ ତ ବଡ଼ ଚମତ୍କାର ଶକ୍ତି ଅଛି! ତୁ ଏତେ କଥା ଜାଣୁ ବୋଲି ମୁଁ ଭାବିନଥିଲି।''

ଏ ସମୟରେ ମାଗୁରନିଶୁଆ ରାଜାଙ୍କୁ ମନ୍ତ୍ରଣା ଦେଇଦେଲା, ''ମଣିମା, ଏ ଲୋକଟାର ଯେତେବେଳେ ଏତେ ଶକ୍ତି ଅଛି, ଆକୁ ସେ ସ୍ୱର୍ଣ୍ଣକେଶୀ ରାଜକୁମାରୀ ପାଖକୁ ପଠାଇ ଦିଅନ୍ତୁନା, ଏ ଯାଇ ତାକୁ ମଣିମାଙ୍କ ପାଖକୁ ନେଇଆସିବ।''

କଥାଟି ରାଜାଙ୍କ ମନକୁ ପାଇଗଲା। ସେ ଆନାଷ୍ଟେସିଓକୁ ଗୋଟିଏ ସୁନ୍ଦର ଘୋଡ଼ା ଦେଇ କହିଲେ, ''ଏହି ଘୋଡ଼ା ଚଢ଼ି ଚାଲିଯାଆ। ତୁ ଯେପରି ବୁଦ୍ଧିମାନ୍ ଲୋକ, ମୋର ଆଶା, ତୁ ନିଶ୍ଚୟ ଏ କାମରେ ସଫଳ ହେବୁ। ଫେରିଲେ ମୁଁ ତୋତେ ଯଥେଷ୍ଟ ପୁରସ୍କାର ଦେବି।''

ଆନାଷ୍ଟେସିଓ ଘୋଡ଼ା ଚଢ଼ି ନିଜ କାମରେ ଚାଲିଯିବାପରେ ମାଗୁରନିଶୁଆ ଭାବିଲା, ''ଟୋକା ଏହି ଥର ମରିବ।'' ସତକୁ ସତ ଆନାଷ୍ଟେସିଓ ଯାଉ ଯାଉ କିଛି ଦିନ ପରେ ଯାଇ ଗୋଟିଏ ବିରାଟ ଅସୁରୁଣୀ ହାବୁଡ଼ରେ ପଡ଼ିଗଲା। ସେତେବେଳକୁ ଅସୁରୁଣୀ ତା ଗୁମ୍ଫାମୁହଁରେ ବସି ତାର ମେଣ୍ଢାପଲକୁ ଚାହିଁରହିଥାଏ। ଆନାଷ୍ଟେସିଓ ଦେଖିଲା ସେ ଯଦି ଅସୁରୁଣୀର ମନ ଧରି କଅଁଳ କଥା ଦୁଇପଦ ନ କହେ, ତେବେ ନିଶ୍ଚୟ ମରିବ। ତେଣୁ ସେ ଖଣ୍ଡେ ଦୂରରେ ଘୋଡ଼ା ରଖିଦେଇ ଅସୁରୁଣୀ ପାଖକୁ ଦୌଡ଼ିଯାଇ କହିଲା, ''ସତରେ ତୁମେ ମୋ ମାଆଠାରୁ ବଳି ସୁନ୍ଦର ଦିଶୁଛ; ମୋତେ ତୁମର ପୁଅ କରିନିଅ।''

ଅସୁରୁଣୀ ତା ଉପରେ ସନ୍ତୁଷ୍ଟ ହୋଇ କହିଲା, ''ହଉରେ ବାପା, ମୋର ତ ପୁଅଝିଅ ନାହାନ୍ତି; ତୁ ମୋ ପୁଅ ହେଲୁ। କିନ୍ତୁ ତୁ ଏ ବାଟରେ କୁଆଡ଼େ ଯାଉଛୁ?'' ସେ କହିଲା, ''ଯାଉଛି ସ୍ୱର୍ଣ୍ଣକେଶୀ ରାଜକୁମାରୀଙ୍କୁ ଆଣିବି।''

ଅସୁରୁଣୀ କହିଲା, ''ହଇରେ ବାପ, ସ୍ୱର୍ଣ୍ଣକେଶୀକୁ ଆଣିବାକୁ ଯାଉଛୁ, ଆଉ ସାଙ୍ଗରେ କିଛି ଧରିନାହୁଁ! ଖାଲିହାତରେ ଗଲେ ତୁ ଆଗ ତା ନଗରରେ ପହଞ୍ଚି ପାରିବୁଟି? ଯେ ତାକୁ ବାହା ହେବ ସେ ଅମୃତ ଖାଇବାକୁ ପାଇବ; କିନ୍ତୁ ତାକୁ ପାଇବା ବଡ଼ କଷ୍ଟ।''

"ତାହାହେଲେ, କଣ କରିବି ମାଆ ?"

ଅସୁରୁଣୀ କହିଲା, "ରହିଥା, ମୁଁ ତୋତେ କିଛି ଜିନିଷ ଦେବି; ସାଙ୍ଗରେ ଧରିଥିବୁ, ଦରକାର ବେଳେ କାମରେ ଆସିବ।" ଏହା କହି ସେ ତାକୁ ଚାଳିଶି ଥଳି ମହୁ ଦେଲା ଏବଂ ଚାଳିଶିଟି ମେଣ୍ଢା ମାରି ସେମାନଙ୍କର ମାଂସତକ ବି ଦେଲା। କହିଲା, "ବାପରେ, ତୁ ଯାଉ ଯାଉ ଦେଖିବୁ ବାଟରେ ମନ୍ଦାଏ ଇନ୍ଦା ପିମ୍ପୁଡ଼ି ଜମିଛନ୍ତି। ଏତେ ଇନ୍ଦା ପିମ୍ପୁଡ଼ି ତୁ କେବେ ଏକାଠି କେଉଁଠି ଦେଖିନଥିବୁ। ତୋ ଘୋଡ଼ା ବି ସେମାନଙ୍କୁ ଦେଖି ଅଟକି ଯିବ। ସେଠାରେ ପହଞ୍ଚିବାକ୍ଷଣି ତୁ ଏ ମାଂସତକ ଫୋପାଡ଼ି ଦେବୁ। ଇନ୍ଦା ପିମ୍ପୁଡ଼ିମାନେ ତତେ ବାଟ ଛାଡ଼ିଦେଇ ମାଂସ ଖାଇବାକୁ ପଳାଇଯିବେ ଯେ ତୁ ଘୋଡ଼ା ଛୁଟାଇ ସେଠାରୁ ପଳାଇଯିବୁ। ତା ପରେ କିଛି ବାଟ ଯାଇ ତୁ ଦେଖିବୁ ବାଟରେ ଗଛ ଡାଳରେ ଗୋଟାଏ ମହୁଫେଣା ଝୁଲୁଛି। ସେଠାରେ କୋଟି କୋଟି ମହୁମାଛି ରାସ୍ତାଘାଟ ଚାରିଆଡ଼େ ଘିଂ ଘିଂ ହୋଇ ଏପରି ଉଡୁଛନ୍ତି ଯେ ଅନ୍ୟ କେହି ସେ ଖଣ୍ଡମଣ୍ଡଳରେ ପଶିପାରିବେ ନାହିଁ।"

ଆନାକ୍ଷେସିଓ ପଚାରିଲା, "ମୁଁ ତାହାହେଲେ ସେମାନଙ୍କୁ କିପରି ପାର ହେବି ?"

ଅସୁରୁଣୀ କହିଲା, "ସେଇଥିପାଇଁ ପରା ମୁଁ ତୋତେ ଏତେ ମହୁ ଦେଇଛି। ସେଠାରେ ପହଞ୍ଚୁ ପହଞ୍ଚୁ ତୁ ଏ ମହୁତକ ସେମାନଙ୍କ ଆଡ଼କୁ ପକାଇଦେବୁ ଯେ ସେମାନେ ତତେ ଖୁସିରେ ବାଟ ଛାଡ଼ିଦେବେ।"

ଆନାକ୍ଷେସିଓ ଅସୁରୁଣୀକୁ ବହୁ ଧନ୍ୟବାଦ ଦେଇ ମାଂସ ଓ ମହୁତକ ଧରି ନିଜ ବାଟରେ ଘୋଡ଼ା ଛୁଟାଇ ଦେଲା। ଅନେକ ଦୂର ଯିବା ପରେ ସେ ଯାଇ ପିମ୍ପୁଡ଼ିମନ୍ଦା ପାଖରେ ପହଞ୍ଚିଗଲା। ଦେଖିଲା, ସତରେ ରାସ୍ତାଘାଟ ବନ୍ଦକରି ଅକଳନା ପିମ୍ପୁଡ଼ି ଜମିଛନ୍ତି। ସେମାନେ ଯେ କେତେ ଦୂର ମାଡ଼ିବସିଛନ୍ତି ଆଖି ପାଉନାହିଁ। ସ୍ଥାନଟା ପିମ୍ପୁଡ଼ିଙ୍କର ସଁ ସଁ ଶବ୍ଦରେ କମ୍ପୁଛି। ସେ ପିମ୍ପୁଡ଼ି ରାଜ୍ୟରେ ପହଞ୍ଚୁ ପହଞ୍ଚୁ ତା ଘୋଡ଼ା କାନଟେକି ଠିଆହୋଇଗଲା। ଆନାକ୍ଷେସିଓ ଆଡ଼କୁ ସେଗୁଡ଼ାକ ମାଡ଼ି ଆସୁ ଆସୁ ସେ ସବୁତକ ମାଂସ ରାସ୍ତା କରକୁ ଫୋପାଡ଼ିଦେଲା। ଆଃ ! ସେ ପିମ୍ପୁଡ଼ିଙ୍କର ଖୁସି ଦେଖେ କିଏ ! ସିଁ ସିଁ ଶବ୍ଦ କରି ସେମାନେ ମାଂସ ପାଖକୁ ଦୌଡ଼ିଗଲେ। ଆନାକ୍ଷେସିଓ ଘୋଡ଼ା ଛୁଟାଇ ଦେବାକୁ ବସିଛି, ପିମ୍ପୁଡ଼ିମାନଙ୍କର ରାଣୀ ଆସି ତାକୁ ବହୁ ଧନ୍ୟବାଦ ଦେଇ କହିଲା, "ମୁଁ ଆପଣଙ୍କ ଉପରେ ଅତି ସନ୍ତୁଷ୍ଟ ହୋଇଛି। ମୋର ଏ ଡେଣାଟି ନିଅନ୍ତୁ। ପାଖରେ ରଖିଥିବେ; ଯଦି କେବେ ଆମ ସାହାଯ୍ୟ ଲୋଡ଼ିବେ, ତେବେ ଏ ଡେଣାଟିକୁ ଟିକିଏ ନିଆଁରେ ଦେଖାଇଦେଲେ ଆମେ ଯାଇ ଆପଣଙ୍କୁ ସାହାଯ୍ୟ କରିବୁ।"

ଆନାକ୍ଷେସିଓ ପିମ୍ପୁଡ଼ି ରାଣୀକୁ ଧନ୍ୟବାଦ ଦେଇ ପିମ୍ପୁଡ଼ିଡେଣାଟି ସାଇତି ରଖିଲା। ସେଠାରୁ ବିଦାୟନେଇ ଯାଉ ଯାଉ କିଛି ଦୂରରେ ସେ ଦେଖିଲା ଭଁ ଭଁ କରି ଗୁଡ଼ାଏ ମହୁମାଛି ଖେଳିବୁଲୁଛନ୍ତି। ସେ ଯହୁଁ ଯହୁଁ ପାଖକୁ ଗଲା, ଭଁ

ଭଁ ଶବ୍ଦ ତହୁଁ ତହୁଁ ବେଶି ଶୁଭିଲା। ଶେଷରେ ସେ ଯାଇ ଏପରି ଏକ ସ୍ଥାନରେ ପହଞ୍ଚିଗଲା ଯେ ମହୁମାଛିଙ୍କ ଗହଳରେ ତା ଘୋଡ଼ା ଆଉ ଆଗକୁ ଯାଇ ପାରିଲା ନାହିଁ। ସେ ଭାବିଲା, ଅପ୍ସରୁଣୀ ବୋଧହୁଏ ଏହି ମହୁମାଛିଙ୍କ କଥା କହୁଥିଲା। ସେ ଏପରି ଭାବୁଛି, ଲକ୍ଷ ଲକ୍ଷ ମହୁମାଛି ଆସି ତାକୁ ଘେରିଗଲେ। ସେଥିରୁ ଗୋଟାଏ ଯଦି ନାହୁଡ଼ ମାରିଦେବ ନା, ମଣିଷ ସେଇଠି ଦରମରା ହୋଇଯିବ। ଆନାକ୍ଷେସିଓ କି ଆଉ ଡେରି କରେ। ସେ ସଙ୍ଗେ ସଙ୍ଗେ ଥଳି ଥଳି କରି ଚାଳିଶି ଥଳିଯାକ ମହୁ ସେମାନଙ୍କ ଆଡ଼କୁ ଫୋପାଡ଼ି ଦେଲା। ମହୁମାଛିଗୁଡ଼ାକ ଆନନ୍ଦରେ ସେ ମହୁ ଖାଇବାକୁ ଲାଗିଲେ। ଏ ଭିତରେ ସେ ସେଠାରୁ ଖସି ଚାଲିଯିବାକୁ ବସିଛି, ମହୁମାଛି ଦଳର ରାଣୀ ଆସି କହିଲା, ''ଆପଣଙ୍କୁ ଅଶେଷ ଧନ୍ୟବାଦ। ଏ ମହୁ ଖାଇ ଆମେ ସମସ୍ତେ ସନ୍ତୁଷ୍ଟ ହୋଇଛୁ। ମୋର ଏ ଡେଣାଟି ନେଇ ପାଖରେ ରଖିଥାନ୍ତୁ, ଯଦି କେବେ ମୋ ସାହାଯ୍ୟ ଲୋଡ଼ନ୍ତି, ତେବେ ଏ ଡେଣାଟି ପୋଡ଼ି ଦେବାମାତ୍ରେ ମୁଁ ଆପଣଙ୍କ ପାଖରେ ପହଞ୍ଚିଯାଇ ସାହାଯ୍ୟ କରିବି।''

ଆନାକ୍ଷେସିଓ ମହୁମାଛିରାଣୀକୁ ଧନ୍ୟବାଦ ଦେଇ, ତା ଡେଣାଟି ନେଇ ସେଠାରୁ ଆଗେଇଚାଲିଲା। କିଛି ଦିନ ଘୋଡ଼ା ଦଉଡ଼ାଇ ଚାଲିବା ପରେ ସେ ଯାଇ ଗୋଟିଏ ନଗରରେ ପହଞ୍ଚିଗଲା। ନଗର ମଝିରେ ଗୋଟିଏ ବିରାଟ ରାଜପ୍ରାସାଦ ଶୋଭା ପାଉଥାଏ। ସେଠାର ଲୋକଙ୍କଠାରୁ ସେ ଶୁଣିଲା ଯେ ସ୍ୱର୍ଣ୍ଣକେଶୀ ରାଜକୁମାରୀ ସେହି ପ୍ରାସାଦରେ ରହନ୍ତି। ଆନାକ୍ଷେସିଓ ଆଉ ବିଳମ୍ବ ନ କରି ସେ ପ୍ରାସାଦ ଭିତରେ ପଶିଗଲା। ଦରବାରକୁ ଯାଇ ସେ ରାଜାଙ୍କୁ ନିଜର ଆସିବାର ଅଭିପ୍ରାୟ ଜଣାଇ ଦେବା ମାତ୍ରେ ରାଜା କହିଲେ, ''ଆହେ, ସ୍ୱର୍ଣ୍ଣକେଶୀର ହାତ ଧରିବା ଲାଗି ତୁମ ପରି କେତେ ଆସିଲେଣି, କେତେ ମଲେଣି ତାର ହିସାବ ନାହିଁ। ତୁମର ଯଦି ମରଣକୁ ଭୟ ନାହିଁ, ତେବେ ଜେମା ପାଖକୁ ଯାଇ ତୁମ ଅଭିପ୍ରାୟ ଜଣାଅ। ତା'ପରେ ସେ ତୁମ କାମରେ ସନ୍ତୁଷ୍ଟ ହେଲେ ତୁମ ସହିତ ଚାଲିଯିବ; ମୁଁ ସେଥିରେ ଆପତ୍ତି କରିବି ନାହିଁ।''

ଆନାକ୍ଷେସିଓ ସ୍ୱର୍ଣ୍ଣକେଶୀ ପାଖକୁ ଯାଇ ନିଜର ଅଭିପ୍ରାୟ ଜଣାଇବା ସଙ୍ଗେ ସଙ୍ଗେ ସ୍ୱର୍ଣ୍ଣକେଶୀ କହିଲା, ''ମୋର ହାତ ଧରିବାକୁ ହେଲେ, ତୁମକୁ କେତୋଟି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ। ଯଦି ପରୀକ୍ଷାରେ ନପାର, ତେବେ ତୁମ ମୁଣ୍ଡ କାଟିଦିଆଯିବ। କ'ଣ ଏଥିରେ ରାଜି ତ?'' ଆନାକ୍ଷେସିଓ କହିଲା, ''ହଁ, ମୁଁ ଏଥିରେ ରାଜି।''

ସ୍ୱର୍ଣ୍ଣକେଶୀ କହିଲା, ''ଦେଖ, ଆମ ନଅରର ଅମାର ଘରେ ଗହମ, ବାର୍ଲି ଓ ଯଅ ମିଶି ଶହେ ବସ୍ତା ଖଣ୍ଡେ ଶସ୍ୟ ଅଛି। ତୁମେ ଆଜି ରାତିକ ଭିତରେ ସେ ସବୁ ବିଭିନ୍ନ ଶସ୍ୟ ଅଲଗା ଅଲଗା କରି ବାଛି ଦିଅ। ଏ ହେଲା ତୁମର ପ୍ରଥମ ପରୀକ୍ଷା।''

ଏତିକି କହି ସ୍ୱର୍ଣ୍ଣକେଶୀ ତାକୁ ନେଇ ଅମାର ଘରେ ପହୁଞ୍ଚାଇ ଦେଲା।

ଆନାଷ୍ଟେସିଓ ଦେଖିଲା ଅମାର ଘରେ ଗହମ, ବାର୍ଲି ଓ ଯଅ ମିଶି ପାହାଡ଼ ପ୍ରମାଣର ଶସ୍ୟ ଗଦା ହୋଇଛି। ରାତିକ ଭିତରେ ସେଗୁଡ଼ାକୁ ଅଲଗା ଅଲଗା କରି ବାଛି ରଖିବା ମୋଟେ ସମ୍ଭବ ନୁହେଁ। ନିଶ୍ଚୟ ପ୍ରାଣ ଗଲା ବୋଲି ଭାବି ସେ ନିରାଶ ହୋଇ ବସିପଡ଼ିବା ବେଳକୁ ତାର ପିମ୍ପୁଡ଼ିରାଣୀ କଥା ମନେ ପଡ଼ିଗଲା। ସେ ସାଙ୍ଗେ ସାଙ୍ଗେ ତା ଡେଣାଟି କାଢ଼ି ଦୀପ ନିଆଁରେ ପୋଡ଼ି ଦେଲା। ପିମ୍ପୁଡ଼ିରାଣୀ କିପରି ଜାଣିଲା କେଜାଣି, ମୁହୂର୍ତ୍ତକ ଭିତରେ ଆସି ସେଠାରେ ପହଞ୍ଚିଯାଇ ପଚାରିଲା, "ମୁଁ ଆପଣଙ୍କୁ କି ପ୍ରକାର ସାହାଯ୍ୟ କରିବି କହିଲେ।"

ଆନାଷ୍ଟେସିଓ ସେ ପାହାଡ଼ ପ୍ରମାଣ ବାର୍ଲି, ଗହମ ଦେଖାଇ କହିଲା, "ଏଗୁଡ଼ାକ ଅଲଗା ଅଲଗା କରି ତିନିଗଦା କରି ଦେବାକୁ ପଡ଼ିବ, ତା ପୁଣି ଆଜି ରାତିକ ଭିତରେ।"

"ବ୍ୟସ୍ତ ହୁଅନ୍ତୁ ନାହିଁ, ଆମେ ସବୁ ଠିକ୍ କରିଦେବୁ।" କହି ପିମ୍ପୁଡ଼ିରାଣୀ ତା ପିମ୍ପୁଡ଼ିଦଳକୁ ଡାକି ଆଣି କାମରେ ଲଗାଇଦେଲା। ଲକ୍ଷ ଲକ୍ଷ ପିମ୍ପୁଡ଼ି ସେ ଶସ୍ୟଗୁଡ଼ାକୁ ଅଲଗା କରି ବାଛିବାରେ ଲାଗିଗଲେ। ରାତି ପାହି ସକାଳ ହେବା ପୂର୍ବରୁ ସେମାନେ ସବୁ କାମ ଶେଷ କରି ଆନାଷ୍ଟେସିଓଠାରୁ ବିଦାୟ ନେଇ ନିଜ ସ୍ଥାନକୁ ଚାଲିଗଲେ। ସକାଳେ ସ୍ୱର୍ଣ୍ଣକେଶୀ ଆସି ଦେଖେ ତ ଆନାଷ୍ଟେସିଓ ସବୁକାମ ସାରି ଆରାମରେ ବସିଛି। ସେ ଏଥିରେ ସନ୍ତୁଷ୍ଟ ହୋଇ କହିଲା, "ସତରେ ଆପଣ ଭାରି ପାରିବାର। ଏଠିକି ଏତେ ରଜାପୁଅ ଆସିଥିଲେ, କିନ୍ତୁ ଏ କାମ କରିପାରିନଥିଲେ। ଯାହାହେଉ ମୋ ହାତ ଧରିବାକୁ ହେଲେ ଆପଣଙ୍କୁ ଆହୁରି ଗୋଟିଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ।"

ଆନାଷ୍ଟେସିଓ ପଚାରିଲା, "ସେ ପୁଣି କି କାମ ?"

ସ୍ୱର୍ଣ୍ଣକେଶୀ କହିଲା, "ଦେଖନ୍ତୁ, ମୋର ଶହେ ଜଣ ଦାସୀ ଅଛନ୍ତି। ସମସ୍ତେ ମୋରି ବୟସର ଝିଅ, ସମସ୍ତେ ପ୍ରାୟ ମୋରି ପରି ସୁନ୍ଦରୀ। ଆମେ ସମସ୍ତେ ଏକା ପ୍ରକାର ବେଶଭୂଷା ହୋଇ ଏକାଠି ଠିଆ ହେବୁ। ଆପଣ ଯଦି ଆମ ଶହେ ଏକ ଜଣଙ୍କ ଭିତରୁ ମୋତେ ବାଛି ବାହାର କରିଦେବେ, ତେବେ ମୁଁ ଆପଣଙ୍କୁ ନିଶ୍ଚୟ ବିବାହ କରିବି। କିନ୍ତୁ ଯଦି ନପାରନ୍ତି, ତେବେ ଆପଣଙ୍କୁ ମୃତ୍ୟୁଦଣ୍ଡ ମିଳିବ।"

ଯାହା ହେବାର ଥିବ ହେବ ଭାବି ଆନାଷ୍ଟେସିଓ କହିଲା, "ବେଶ୍ କଥା, ତୁମେ ସବୁ ବେଶ ହୋଇ ଠିଆ ହୁଅ, ମୁଁ ତାପରେ ଚିହ୍ନିବି।"

ସ୍ୱର୍ଣ୍ଣକେଶୀ ନିଜ ଦାସୀଙ୍କୁ ନେଇ ବେଶଭୂଷା ହେବାଲାଗି ଚାଲିଗଲା। ଏ କାମରେ ମହୁମାଛିରାଣୀଠାରୁ କିଛି ସାହାଯ୍ୟ ମିଳିପାରେ ଭାବି ଆନାଷ୍ଟେସିଓ ମହୁମାଛିରାଣୀର ଡେଣାଟି କାଢ଼ି ନିଆଁରେ ପକାଇଦେଲା। ମହୁମାଛିରାଣୀ ସଙ୍ଗେ ସଙ୍ଗେ ଭଁ ଭଁ ଶବ୍ଦ କରି ସେଠାରେ ଆସି ପହଞ୍ଚିଗଲା। ପଚାରିଲା, "ମୁଁ ଆପଣଙ୍କୁ କି ସାହାଯ୍ୟ କରିପାରିବି, ଶୀଘ୍ର କୁହନ୍ତୁ।" ଆନାଷ୍ଟେସିଓ ତାକୁ ନିଜର ସବୁ ସମସ୍ୟା କହିବାରୁ ସେ କହିଲା, "ମୋତେ ଖାଲି ସେ ସ୍ୱର୍ଣ୍ଣକେଶୀ ରାଜକୁମାରୀଙ୍କୁ

ଦେଖାଇ ଦିଅ । ସେମାନେ ଏକା ପ୍ରକାର ବେଶଭୂଷା ହୋଇ ଠିଆହୋଇଥିବାବେଳେ, ମୁଁ ଆସି ସେ ରାଜକୁମାରୀଙ୍କ ମୁହଁ ପାଖରେ ଗୁଣୁଗୁଣୁ ହୋଇ ଉଡ଼ିବି । ସେଥିରୁ ଆପଣ ତାଙ୍କୁ ଅତି ସହଜରେ ଚିହ୍ନିପକାଇବେ ।''

ଆନାଷ୍ଟେସିଓ ବିଜୟ ଆନନ୍ଦରେ ସେ ମହୁମାଛିରାଣୀକୁ ନେଇ ସ୍ୱର୍ଣ୍ଣକେଶୀକୁ ଚିହ୍ନାଇ ଦେଲା । ସେଦିନ ଉପର ବେଳା ସ୍ୱର୍ଣ୍ଣକେଶୀ ନିଜର ଶହେ ଦାସୀଙ୍କ ସହିତ ଏକା ରଙ୍ଗ, ଏକା କାଟର ପୋଷାକ ପିନ୍ଧି, ଏକା ପ୍ରକାର ବେଣୀ ପକାଇ, ଏକା କିସମର ଅଳଙ୍କାର ପିନ୍ଧି ଆନାଷ୍ଟେସିଓ ଆଗରେ ଆସି ଠିଆହୋଇଗଲା । ସେ ସମସ୍ତଙ୍କ ମୁଣ୍ଡରେ ଓଢ଼ଣା ପଡ଼ିଥାଏ ଯେ ସେମାନଙ୍କ ଭିତରୁ ଜଣକୁ ଅଲଗା କରି ଚିହ୍ନିବା ଅସମ୍ଭବ । ସେ ଭିତରେ ସ୍ୱର୍ଣ୍ଣକେଶୀ କିଏ ହୋଇଥାଇପାରେ ବୋଲି ଆନାଷ୍ଟେସିଓ ଅନୁମାନ କରୁଛି, ଏ ସମୟରେ ମହୁମାଛିରାଣୀ ଆସି ଜଣଙ୍କ ମୁହଁ ପାଖରେ ଗୁଣୁଗୁଣୁ ହୋଇ ଉଡ଼ିଲା । ଏ ପୋଡ଼ା ମହୁମାଛିଟା ଏତିକିବେଳେ କେଉଁଠୁ ଆସି ହଇରାଣ କରୁଛି ବୋଲି ସ୍ୱର୍ଣ୍ଣକେଶୀ ବିରକ୍ତ ହେଉଛି, ଆନାଷ୍ଟେସିଓ ମହୁମାଛିରାଣୀର ଗୁଣୁଗୁଣୁରୁ ବୁଝିଗଲା ଯେ ସେ ହିଁ ସ୍ୱର୍ଣ୍ଣକେଶୀ । ସେ ସଙ୍ଗେ ସଙ୍ଗେ ଯାଇ ତା ହାତ ଧରିପକାଇ କହିଲା, ''ରାଜକୁମାରୀ, ତୁମକୁ ତ ମୁଁ ଚିହ୍ନିଦେଲି, ଆଉ ବିଳମ୍ବ କାହିଁକି, ଚାଲ ଏହି ବେଶରେ ମୁଁ ତୁମକୁ ଆମ ରାଜ୍ୟକୁ ନେଇଯାଏ ।''

ସ୍ୱର୍ଣ୍ଣକେଶୀ ଆନାଷ୍ଟେସିଓର ରୂପ ଓ ଗୁଣରେ ଆଗରୁ ମୁଗ୍ଧ ହୋଇସାରିଥିଲା । ବର୍ତ୍ତମାନ ସେ ପରୀକ୍ଷାରେ ଜୟ କରିବାରୁ ସେ ଅତି ଆନନ୍ଦରେ ତା ଘୋଡ଼ାରେ ବସି ଚାଲିଗଲା । ଆନାଷ୍ଟେସିଓ ସ୍ୱର୍ଣ୍ଣକେଶୀକୁ ଧରି ଯାଉ ଯାଉ ବାଟରେ ସେହି ଅସୁରୁଣୀ ସହିତ ଭେଟହୋଇଗଲା । ଏ ଦୁହେଁ ଯାଇ ଅସୁରୁଣୀକୁ ନମସ୍କାର କରୁ କରୁ ସେ ସନ୍ତୁଷ୍ଟ ହୋଇ ସେମାନଙ୍କୁ ଅନେକ ଧନରତ୍ନ ଦେଲା, କହିଲା, ''ତୁମେ ଦୁଇଜଣ ରାଜା ରାଣୀ ହୋଇ ସୁଖରେ ରହ । ମଝିମଝିରେ ଏ ମାଆଟାକୁ ଟିକିଏ ଦେଖିବାକୁ ଆସୁଥିବ ।'' ଅସୁରୁଣୀଠାରୁ ବିଦାୟ ନେଇ ଦୁହେଁ ଆସି ରାଜାଙ୍କ ଦରବାରରେ ପହଞ୍ଚିଗଲେ । ସ୍ୱର୍ଣ୍ଣକେଶୀକୁ ଦେଖି ରାଜା ବଡ଼ ସନ୍ତୁଷ୍ଟ ହୋଇ ଆନାଷ୍ଟେସିଓକୁ କହିଲେ, ''ସତରେ ଆନାଷ୍ଟେସିଓ, ତୁମେ ଏତେ ପାରିବାର ବୋଲି ମୁଁ ଜାଣିନଥିଲି । ତୁମେ ଏତେ ବିପଦ ପାର ହୋଇ ଏଡ଼େ ବଡ଼ କାମ କରିପାରିଛ; ତେଣୁ ତୁମ ପାଇଁ ଆଜି ଆମ ନଅରରେ ଗୋଟିଏ ଭୋଜି କରାଯିବ ।'' କିନ୍ତୁ ମାଗୁରନିଶୁଆ ଯେତେବେଳେ ଦେଖିଲା ଯେ ତାର ଉଦ୍ଦେଶ୍ୟ ପୂରଣ ହେଲାନାହିଁ, ଆନାଷ୍ଟେସିଓ ସ୍ୱର୍ଣ୍ଣକେଶୀ କନ୍ୟାକୁ ନେଇ ଚାଲି ଆସିଲା, ସେ ଖାଲି ମନେ ମନେ ରକ୍ତଚାଉଳ ଚୋବାଇହେଲା ।

ଯାହାହେଉ ସେଦିନ ସନ୍ଧ୍ୟାରେ ଏକ ବିରାଟ ଭୋଜିସଭା କରାଗଲା । ଭୋଜିସଭାରେ ସରବତ୍ ପରଷା ଯାଉଥିବାବେଳେ ମାଗୁରନିଶୁଆ ଆନାଷ୍ଟେସିଓ ସରବତ୍‌ରେ ଦୁଇଟୋପା ବିଷ ମିଶାଇ ଦେଲା । ଆନାଷ୍ଟେସିଓ ସେ ସରବତ୍ ପିଇଦେବାମାତ୍ରେ ତା ଜୀବନ ନାଟିକା ଛାଡ଼ିଗଲା । ଘଟଣା ଦେଖି ରାଜା, ମନ୍ତ୍ରୀ,

ପାରିଦଷଦମାନେ ସେଠାକୁ ଦୌଡ଼ି ଆସିଲେ। ଏତେ ବଡ଼ କାଣ୍ଡ କିପରି ହୋଇଗଲା, କେହି ଜାଣି ପାରିଲେ ନାହିଁ। ରାଜା କିନ୍ତୁ ତା ଗୁଣ କହି କାନ୍ଦି ପକାଇଲେ। ଏ ସମୟରେ ସ୍ୱର୍ଣ୍ଣକେଶୀ ସେଠାକୁ ଆସି ନିଜ ଅମୃତ କଳସରୁ କିଛି ଅମୃତ ନେଇ ତାକୁ ପିଆଇଦେଲା। ସଙ୍ଗେ ସଙ୍ଗେ ସେ ଆଖି ମଳି ମଳି ଉଠି ବସି କହିଲା, ''ଆଃ, ମୁଁ କି ଶାନ୍ତିରେ ଶୋଇଥିଲି! ମତେ କାହିଁକି ଏପରି ଉଠାଇଦେଲ, ରାଜକୁମାରୀ ?''

କିନ୍ତୁ ରାଜା କହିଲେ, ''ତୁମେ ଶୋଇନଥିଲ ଆନାଷ୍ଟେସିଓ, ମରିଯାଇଥିଲ। ମରଣରାଜ୍ୟରୁ ଏ ରାଜକୁମାରୀ ତୁମକୁ ପୁଣି ଜୀବନରାଜ୍ୟକୁ ଫେରାଇଆଣିଲେ।''

ସଙ୍ଗେ ସଙ୍ଗେ ଆନାଷ୍ଟେସିଓ କହିପକାଇଲା, ''ସତେ ! ମୁଁ ତା'ହେଲେ ମରିଯାଇ ପୁଣି ଦ୍ୱିତୀୟ ଜୀବନ ପାଇଗଲି !! ପ୍ରଭୁଙ୍କର ଅପାର ମହିମା। ମୁଁ ହିଁ ମହାରାଜାଙ୍କର ଧରମପୁଅ। ଏ ମାଗୁରନିଶୁଆ . . . ।'' ସେ ସବୁ ଗୁପ୍ତକଥା ଗୋଟି ଗୋଟି କରି କହିଗଲା, କାରଣ ତାର ଶପଥ ଅନୁଯାୟୀ ସେ ଆମରଣ ସବୁକଥା ଗୁପ୍ତ ରଖିଥିଲେ ବି ପୁନର୍ଜନ୍ମ ପାଇଥିବାରୁ ସେ ଶପଥର ଆଉ କିଛି ଅର୍ଥ ନଥିଲା। ସବୁ ଶୁଣି ରାଜା ମାଗୁରନିଶୁଆକୁ ନେଇ ଗୋଟିଏ ଅନ୍ଧ କୋଠରିରେ ବନ୍ଦୀ କରି ରଖିଦେଲେ ଏବଂ ସ୍ୱର୍ଣ୍ଣକେଶୀ ସହିତ ଆନାଷ୍ଟେସିଓର ବିବାହ କରାଇଦେଇ ସେମାନେ ରାଜ୍ୟର ଯୁବରାଜ ଯୁବରାଣୀ ବୋଲି ଘୋଷଣା କରିଦେଲେ। ବିଶ୍ୱାସଘାତକ ମାଗୁରନିଶୁଆ ମଲା ପର୍ଯ୍ୟନ୍ତ ସେହି ଅନ୍ଧ କୋଠରିରେ ବନ୍ଦୀ ହୋଇ ରହିଲା।

## ବାରମାସ

ଅନେକ ଦିନ ତଳର କଥା। ଗୋଟିଏ ଗାଆଁରେ ଟାର୍ଟାନା ଓ ଥିଓଡ଼ୋରା ବୋଲି ଦୁଇଟି ଭଉଣୀ ଥିଲେ। ଏକା ମାଆ ପେଟର ଭଉଣୀ ହେଲେ କଣ ହେଲା, ଦି' ଭଉଣୀ ଭିତରେ ପିଲାଟିଦିନରୁ ଆକାଶ ପାତାଳ ଫରକ୍ ଦେଖାଗଲା। ବଡ଼ଭଉଣୀ ଟାର୍ଟାନା ଦେଖିବାକୁ ଭାରୀ ସୁନ୍ଦରୀ। ତା ମୁହଁଟି ସବୁବେଳେ ହସହସ। ସମସ୍ତଙ୍କୁ ମିଠା କଥା କହେ। ସାହିପଡ଼ିଶା ଲୋକଙ୍କୁ ଆପଣାର ପରି ଦେଖେ। ବୋଲହାକ କରିବାକୁ ଦିନେ ବି ପଛାଏ ନାହିଁ। ପୁଣି ଅନ୍ୟମାନଙ୍କ ଖୁସିରେ ତାର ଖୁସି।

କିନ୍ତୁ ସାନଭଉଣୀ ଥିଓଡ଼ୋରାର ମୁହଁଟା ସବୁବେଳେ ଫଣଫଣ। ସେ କଥା-କଥାକେ ଚିଡ଼େ। କେବେ କୁଟାଖଣ୍ଡକ ଦି'ଖଣ୍ଡ କରେନି; କାମଟାଏ ପଡ଼ିଲା ତ ଗୁଳୁଗୁଳୁ କୁନ୍ଥୁକୁନ୍ଥୁ ହୋଇ ସବୁବେଳେ ବାଆଁରେଇ ଦିଏ। ଆଉ କାହାର ଯଦି ଟିକିଏ ଭଲ ହୋଇଗଲା, ତେବେ ତ ସେ ଈର୍ଷାରେ ଜଳିପୋଡ଼ି ଯାଏ।

ସେ ରାଜ୍ୟ ତ ଚାରିଆଡ଼େ ପାହାଡ଼ ପର୍ବତରେ ଭରା। ଦିନେ ଟାର୍ଟାନା ପାହାଡ଼କୁ ବୁଲିଯାଇଥାଏ। ନୂଆ ନୂଆ ଶୀତ ପଡ଼ିଆସୁଥାଏ। ପାହାଡ଼ ଚଢ଼ି

ଏଣେତେଣେ ବୁଲି ବୁଲି ସେ ଯାଇ ଗୋଟିଏ ଗୁମ୍ଫା ପାଖରେ ପହଞ୍ଚିଗଲା । ଦେଖିଲା ଗୁମ୍ଫା ଭିତରେ ଧୁନି ଲଗାଇ ବାରଜଣ ଧୋକଡ଼ୀ ବୁଢ଼ୀ ବସି ନିଆଁ ପୋଉଁଛନ୍ତି । ତା ଦେଖି ଦେଖି ସେମାନେ ଡାକ ପକାଇଲେ, ‘‘ଆଲୋ ମାଆ, ଏ ଶୀତ କାକରରେ କୁଆଡ଼େ ବୁଲୁଛୁ, ଏଠିକି ଆସ, ଟିକିଏ ନିଆଁ ପୋଇଁ ଯିବୁ ।’’

ବୁଢ଼ୀମାନଙ୍କ ଡାକରା ଶୁଣି ଟାର୍ଟାନା ଯାଇ ନିଆଁ ପାଖରେ ବସିଗଲା । ଦୁଇ ହାତ ମେଲାଇ ନିଆଁ ସେକିହେଉଛି, ଏ ସମୟରେ ସେମାନଙ୍କ ଭିତରୁ ଜଣେ ବୁଢ଼ୀ ତାକୁ ପଚାରିଲା, ‘‘ହଇଲୋ ମାଆ, ତୁ ତ ଜାଣିଥିବୁ ବର୍ଷକ ବାରମାସ । ଏ ବାରମାସ ଭିତରୁ ତତେ କେଉଁ ମାସଟି କିପରି ଲାଗେ ?’’

ତା ଉତ୍ତର ଶୁଣିବାଲାଗି ବାରଜଣଯାକ ବୁଢ଼ୀ କାନେଇଛନ୍ତି, ସେ କହିଲା, ‘‘ମାଉସି ! ମାର୍ଚ୍ଚ, ଏପ୍ରିଲ ଆଉ ମେ– ଏ ତିନିମାସ ହେଲା ବସନ୍ତ ଋତୁ । ପାହାଡ଼ ପର୍ବତର ଗଛଲତାରେ ଏ ଋତୁରେ କେତେ ଯେ ଫୁଲ ଫୁଟେ ତୁମେ ସବୁ ଦେଖିଥିବ । ଫୁଲ ପରା ପଦାର୍ଥକୁ କିଏସେ ଭଲ ନପାଏ ? ତେଣୁ ଏ ତିନିମାସକୁ ମୁଁ ଖୁବ୍ ଭଲପାଏ ।’’

ତାର ଏ ଉତ୍ତର ଶୁଣି ବୁଢ଼ୀ ତିନିଜଣ ସନ୍ତୋଷରେ ହସି ଉଠିଲେ । ତା’ପରେ ଟାର୍ଟାନା କହିଲା, ‘‘କିନ୍ତୁ ମାଉସି ! ଜୁନ, ଜୁଲାଇ ଓ ଅଗଷ୍ଟ ମାସରେ କି ସୁନ୍ଦର ଖରା ପଡ଼େ ଜାଣିଥିବ, ଚାରିଆଡ଼ ଉଜ୍ଜ୍ୱଳ ଦେଖାଯାଏ । କେତେ ଜାତିର ଫଳ ନପାଚେ, ଫସଲ ନଫଳେ ! ତେଣୁ ମୋତେ ଏ ତିନିମାସ ବି ଖୁବ୍ ଭଲଲାଗେ ।’’

ଏକଥା ଶୁଣି ଆଉ ତିନିଜଣ ବୁଢ଼ୀ ଖୁସିରେ ମୁଣ୍ଡ ଟୁଙ୍ଗାରିବାକୁ ଲାଗିଲେ । ଏତିକିବେଳେ ଟାର୍ଟାନା ହସହସ ମୁହଁରେ କହିଚାଲିଲା, ‘‘ତା’ପରେ ସେପ୍ଟେମ୍ବର, ଅକ୍ଟୋବର ଓ ନଭେମ୍ବର ଏ ତିନିମାସ ପଡ଼େ । ସେପ୍ଟେମ୍ବର ବେଳକୁ ବି ଉଷୁମ ଉଷୁମ ଖରା ପଡୁଥାଏ; ଅକ୍ଟୋବର ତ ଅଙ୍ଗୁରଖିଆ ମାସ, ବାରି-ବଗିଚା ଯହିଁ ଦେଖିବ ତହିଁ ଅଙ୍ଗୁର । ଆଉ ନଭେମ୍ବର ମାସର ସେଣ୍ଟ୍ ଜର୍ଜ ଉତ୍ସବ ବେଳେ ଯେଉଁ ଭୋଜି ହୁଏ; ସେ ଭୋଜିକୁ ଏବେ କିଏ ଭଲ ନପାଏ କହିଲ । ତେଣୁ ମୁଁ ଏ ତିନିମାସକୁ ବି ଭଲପାଏ ।’’

ଏକଥା ଶୁଣିବାକ୍ଷଣି ଆଉ ତିନିଜଣ ବୁଢ଼ୀ ଆନନ୍ଦରେ ତାଳି ମାରିପକାଇଲେ, ଏଣେ ଟାର୍ଟାନା କହିଚାଲିଲା, ‘‘ଆଉ ଡିସେମ୍ବର, ଜାନୁୟାରୀ ଓ ଫେବୃୟାରୀ– ଏଗୁଡ଼ିକ ତ ଖୁସିର ଦିନ । ଡିସେମ୍ବରର ବଡ଼ଦିନ ପର୍ବ ତ ହେଲା ସବୁଠୁ ବଡ଼ ପର୍ବ; ଜାନୁୟାରୀ ଆସୁ ଆସୁ ନୂଆ ବର୍ଷ ହୁଏ ଯେ ଘରେ ଖିରି-ପିଠା ଭାସେ, ପୁଣି ଫେବୃୟାରୀଟି ଛୋଟ ମାସଟିଏ ଯେ ଏ ସବୁ ଆନନ୍ଦ ଉତ୍ସବ କଥା ଭାବୁ ଭାବୁ ସେ ମାସଟି କେତେବେଳେ ଯେ ସରିଯାଏ ଜାଣି ହୁଏନି । ତେଣୁ ମୁଁ ଏ ତିନି ମାସକୁ ମଧ୍ୟ ଖୁବ୍ ଭଲପାଏ ।’’

ଏକଥା ଶୁଣି ଶେଷ ତିନିଜଣ ବୁଢ଼ୀ ବି ଆନନ୍ଦରେ ବାଃ, ବାଃ କହିବାକୁ ଲାଗିଲେ । ଶେଷରେ ସେମାନଙ୍କ ଭିତରୁ ଜଣେ ମୁଖିଆ ହୋଇ ଟାର୍ଟାନାକୁ କହିଲା, ‘‘ମାଆଲୋ, ତୋ କଥା ଶୁଣି ଆମେ ଭାରୀ ସନ୍ତୁଷ୍ଟ ହେଲୁ । ତୋର ଏ ମିଠା

କଥା ଲାଗି ଆମେ ବାରଭଉଣୀ ତତେ କିଛି ପୁରସ୍କାର ଦେବୁ। ଏଥିରୁ ଯେତେ ଜଳନ୍ତା କୋଇଲା ପାରିବୁ ସେତେ ତୋ ଜାମା କାନିରେ ବାନ୍ଧି ନେଇଯାଆ।''

ଟାର୍ଗାନା ଚିହିଁକି ଉଠି କହିଲା, ''ନାହିଁ ମାଉସୀ, ନିଆଁ ପଡ଼ିଲେ ଜାମାପଟା ପୋଡ଼ିଯିବ, ଦେହମୁଣ୍ଡ ଫୋଟକା ହୋଇଯିବ।''

ବୁଢ଼ୀ ଜଣକ କହିଲା, ''ଆଲୋ ମାଆ, ନାହିଁ ଲୋ, କିଛି ହେବ ନାହିଁ। ଆସ, ଯେତେ ପାରୁଛୁ ସେତେ କୋଇଲା ନେଇଯାଆ।''

ତେଣୁ ଟାର୍ଗାନା ତା ଜାମା କାନିରେ ଯେତେ ପାରିଲା ସେତେ ନିଆଁଗଡ଼ ଓ କୋଇଲା ଭରି କରିବାକୁ ଲାଗିଲା। ଦେଖିଲା, ସତରେ ସେ ନିଆଁରେ ତା ହାତ ଫୋଟକା ହେଉ ନାହିଁ କି, ତା ଜାମା ପୋଡୁନାହିଁ। ନିଆଁତକ ଧରି ସେ ବୁଢ଼ୀମାନଙ୍କଠାରୁ ବିଦାୟ ନେଇ ଘରକୁ ଚାଲି ଆସିଲା। ସେ ଘରେ ଆସି ପହଞ୍ଚି ଗଡ଼ତକ ଘର ଅଗଣାରେ ଢାଳିଦିଏ ତ ଦେଖିଲା ସେଗୁଡ଼ାକ ସବୁ ସୁନା ପାଲଟି ଯାଇଛି। ସୁନାଖଣ୍ଡଗୁଡ଼ାକ ଝମ୍‌ଝାମ୍ ହୋଇ ଏଣେତେଣେ ବିଛେଇ ହୋଇ ପଡ଼ିବାରୁ ତା ବାପା ମାଆ ଆସି ସେଠାରେ ପହଞ୍ଚିଗଲେ। ଝିଅ ଏତେଗୁଡ଼ିଏ ସୁନା ଆଣିଛି ଦେଖି ସେମାନେ ଖୁସି ହୋଇଗଲେ। ଯେ ଶୁଣିଲା ସେ କହିଲା– ଟାର୍ଗାନା ପରି ଭାଗ୍ୟବତୀ ଝିଅ ଆଉ ନଥିବ।

କିନ୍ତୁ ବଡ଼ଭଉଣୀର ଏ ସୌଭାଗ୍ୟ ଓ ପ୍ରଶଂସା ଶୁଣି ଥିଓଡ଼ୋରା ଈର୍ଷାରେ ଜଳିପୋଡ଼ିଗଲା। ସେହିଦିନୁ ସେ ଟାର୍ଗାନାକୁ ଦେଖିଲେ ମୁହଁ ମୋଡ଼ି ଦିଏ। ଏପରି ଦୁଇଚାରି ଦିନ ଯିବା ପରେ ସେ ତା ବଡ଼ ଭଉଣୀ ସଙ୍ଗେ କଳି କରି କହିଲା, ''ତୋ ଭାଗ୍ୟ କାହିଁକି ଏତେ ଭଲ ହେବ, ତୁ କାହିଁକି ସବୁ ପ୍ରଶଂସା ଶୁଣିବୁ– ମୁଁ କଣ ଏଡ଼ିକି ଅଯୋଗ୍ୟ ହୋଇଛି?''

ଏ କଟୁକଥା ଶୁଣି ଟାର୍ଗାନା କହିଲା, ''ଆଲୋ, ତୁ ପ୍ରଶଂସା ପାଆନା ବୋଲି ମୁଁ କଣ କହିଲି? ତୁ ନିଜେ ଯାଇ ତୋ ଭାଗ୍ୟ ପରୀକ୍ଷା କରି ଆସୁନୁ?'' ଥିଓଡ଼ୋରା ପଚାରିଲା, ''କେଉଁଠିକି ଯିବି?''

ଟାର୍ଗାନା କହିଲା, ''କାହିଁକି, ମୁଁ ଯେଉଁଠିକି ଯାଇଥିଲି, ସେଠିକି ଯାଆ। ଆମ ଗାଆଁମୁଣ୍ଡରେ ଯେଉଁ ବଡ଼ ପାହାଡ଼ଟି ଅଛି, ସେ ପାହାଡ଼ ଚଢ଼ି ଗଲାବେଳେ ଦେଖିବୁ ଗୋଟିଏ ଗୁମ୍ଫାରେ ବାରଜଣ ବୁଢ଼ୀ ବସିଛନ୍ତି। ତତେ ଦେଖୁ ଦେଖୁ ସେ ବୁଢ଼ୀମାନେ ନିଆଁ ପୋଇଁବାକୁ ଗୁମ୍ଫା ଭିତରକୁ ଡାକିବେ। ସେମାନେ ମୋତେ ବାରମାସ ଭିତରୁ କେଉଁ ମାସଟି କିପରି ଲାଗେ ବୋଲି ପଚାରିଥିଲେ। ତତେ ସେପରି କିଛି ପଚାରିବେ; ତୁ ତୋ ମନ ଖୋଲି ସତକଥା କହିଦେବୁ। ତା'ପରେ ସେମାନେ ନିଶ୍ଚୟ ତତେ କିଛି ପୁରସ୍କାର ଦେବେ। ଧର, ମୋତେ ଯେପରି ଗଡ଼ନିଆଁ ଗୁଡ଼ାଏ ଦେଇଥିଲେ। ତୋର ଭଲ ଭାଗ୍ୟ ଥିଲେ ନିଶ୍ଚୟ ଭଲ ଫଳିବ। ମୋ ସାଙ୍ଗରେ କାହିଁକି ମିଛରେ କଳି କରୁଛୁ?''

ଏକଥା ଶୁଣୁ ଶୁଣୁ ଥିଓଡ଼ୋରା ସୁନା ସ୍ୱପ୍ନ ଦେଖିପକାଇଲା। ସେ କହିଲା, ''ହଇଲୋ, ଏଇତକ କାମ କରି ତୁ ଭାଗ୍ୟବତୀ ବୋଲାଉଛୁ। ଦେଖ୍, ମୁଁ ବି

ଆଜି ପାହାଡ଼କୁ ଯାଇ ସୁନା ବୋହି ଆଣିବି।'' ଏହା କହି ସେ ପାହାଡ଼ ଚଢ଼ିବାକୁ ବାହାରି ପଡ଼ିଲା। ପାହାଡ଼ ଚଢ଼ି ଯାଉ ଯାଉ ସେ ଆସି ବାରବୁଢ଼ୀଙ୍କ ଗୁମ୍ଫାରେ ପହଞ୍ଚିଗଲା। ତାକୁ ଦେଖି ଦେଖି ବାରଜଣଯାକ ବୁଢ଼ୀ ଡାକ ପକାଇଲେ, ''ଆଲୋ ମାଆ, ଆସ ଆସ, ଆମ ଧୁନି ପାଖରେ ବସି ଟିକିଏ ନିଆଁ ପୋଇଁବୁ।''

ଥିଓଡ଼ୋରା ଯାଇ ମୁହଁ ଫୁଲାଇ ନିଆଁ ପାଖରେ ବସିପଡ଼ିଲା। ସେ ତାର ନିଆଁ ପୋଉଁ ପୋଉଁ ଜଣେ ବୁଢ଼ୀ ପଚାରିଲା, ''ହଇଲୋ ମାଆ, ବର୍ଷର ବାରମାସ ବିଷୟରେ ତୋର କି ଧାରଣା ଅଛି କହିଲୁ।''

ଥିଓଡ଼ୋରା ମୁହଁ ଖଟା କରି କହିଲା, ''କୋଉ ମାସଟା ଏବେ ଭଲ ଯେ? ମାର୍ଚ୍ଚ, ଏପ୍ରିଲ ଓ ମେ– ଏ ତିନିମାସ ସାରା ଦକ୍ଷିଣରୁ ଥଣ୍ଡା ପବନ ବହେ ଯେ ଦିନବେଳେ ବି ଥଣ୍ଡାଲାଗେ। ସେଥିପାଇଁ ମୁଁ ସେ ମାସଗୁଡ଼ାକୁ ମୋଟେ ଭଲପାଏନା।

ତା କଥା ଶୁଣି ତିନିଜଣ ବୁଢ଼ୀ ଅସନ୍ତୁଷ୍ଟ ହୋଇ ଏଣୁତେଣୁ କଣ ସବୁ କହିବାକୁ ଲାଗିଲେ। ଥିଓଡ଼ୋରା କହିଚାଲିଲା, ''ତା'ପରେ ଯେଉଁ ଜୁନ୍, ଜୁଲାଇ ଓ ଅଗଷ୍ଟ ମାସ ଆସେ, ସେ ମାସଗୁଡ଼ାକ ଆହୁରି ଖରାପ। ଖରା ହେବ ବୋଲି ପୁଣି ଏତେ ଖରା ହେବ! ଦେହମୁଣ୍ଡ ତାତିରେ ପୋଡ଼ିଯାଏ ଯେ ମୁଁ ସେ ମାସଗୁଡ଼ାକୁ ଜମା ପସନ୍ଦ କରେନି।''

ଏ ଅଭିଯୋଗ ଶୁଣି ଆଉ ତିନିଜଣ ବୁଢ଼ୀ ତାଙ୍କ ମୁହଁ ମୋଡ଼ି ସେମାନଙ୍କର ଅସନ୍ତୋଷ ପ୍ରକାଶ କରିବାକୁ ଲାଗିଲେ। କିନ୍ତୁ ସେମାନଙ୍କୁ ନ ଚାହିଁ ଥିଓଡ଼ୋରା ତାର କହିହେଲା, ''ଆଉ ସେପ୍‌ଟେମ୍ବର, ଅକ୍ଟୋବର ଓ ନଭେମ୍ବର ବୋଲି ଯେଉଁ ତିନିମାସ ଆସେ, ସେଗୁଡ଼ାକ ଏବେ କେଉଁ ଖୁସି ଦିଅନ୍ତି ଯେ? ଆମର ତ ନିଜର ବୋଲି ଅଙ୍ଗୁର ବଗିଚା ନାହିଁ। ଅନ୍ୟ ଲୋକଙ୍କ ବାଡ଼ିବଗିଚାରେ ଅଙ୍ଗୁର ଫଳିଲେ ମୋତେ କାହିଁକି ଖୁସି ଲାଗିବ? ତେଣୁ ସେ ତିନି ମାସ ବି ମୋତେ ଭଲଲାଗେନି।''

ଏଭଳି ସ୍ୱାର୍ଥପର କଥା ଶୁଣି ଆଉ ତିନିଜଣ ବୁଢ଼ୀ ଦୁଃଖ ଅପମାନରେ ମୁହଁ ପୋତିଦେଲେ। ତେଣେ ଥିଓଡ଼ୋରା ଡିସେମ୍ବର, ଜାନୁଆରୀ ଓ ଫେବୃୟାରୀ ମାସ ବିଷୟରେ ନିଜର ମତ ଦେଇ କହିଲା, ''ଏ ତିନିଟା ତ ବର୍ଷର ସବୁଠୁ ଖରାପ ମାସ। ଶୀତ କାକର ଓ ତୁଷାର ବରଫରେ ଏ ତିନିମାସ ମଣିଷ ପ୍ରାଣକୁ କଲବଲ କରିଦିଅନ୍ତି। ତେଣୁ ଏ ତିନିମାସକୁ ମୁଁ ସବୁଠୁ ବେଶି ଘୃଣାକରେ।''

ଏ ମନ୍ତବ୍ୟ ଶୁଣି ଶେଷ ତିନିଜଣ ବୁଢ଼ୀ ବି ଅସନ୍ତୁଷ୍ଟ ହୋଇଗଲେ। ଥିଓଡ଼ୋରାର ବଖାଣ ଶେଷ ହେବା ପରେ ପ୍ରଶ୍ନ ପଚାରିଥିବା ବୁଢ଼ୀଟି କହିଲା, ''ହଉଲୋ ମାଆ, ତୋ ଉତ୍ତର ଆମେ ଶୁଣି ସାରିଲୁ। ଏଥର ତୋ ପୁରସ୍କାର ନେ। ତୋ ଜାମା କାନି ମେଲାଇ ଏଥିରୁ ଯେତେ ନିଆଁରଡ଼ ପାରୁଛୁ ନେଇଯାଆ।''

ଥିଓଡ଼ୋରା ଦେଖିଲା, ତା ଅପା ଯାହା ଯେପରି କହିଥିଲା, ଘଟଣାଗୁଡ଼ାକ ଠିକ୍ ସେପରି ଘଟିଗଲା। ତେଣୁ ସେ ତରତର ହୋଇ ତା ଜାମା କାନିରେ

ଯେତେ ପାରିଲା ସେତେ ଗଡ଼ ଭରି ଜରିପକାଇଲା । ସେ ଗଡ଼ରେ ତା ହାତ ଫୋଟକା ହେଲା ନାହିଁ କି ତା ଜାମା ପୋଡ଼ିଲା ନାହିଁ । ଘରେ ଯାଇ ପହଞ୍ଚିବା ବେଳକୁ ସେଗୁଡ଼ାକ ସବୁ ସୁନା ପାଲଟି ଯାଇଥିବ ଭାବି ତରତର ହୋଇ ଘରକୁ ପଳାଇ ଆସିଲା । ଘରେ ପହଞ୍ଚୁ ପହଞ୍ଚୁ ତା ସୌଭାଗ୍ୟ ଦେଖିବା ଲାଗି ସମସ୍ତଙ୍କୁ ଡାକ ପକାଇଲା । ସମସ୍ତେ ଆସି ରୁଣ୍ଡ ହେବାରୁ ସେ ତା ଜାମାକାନିରେ ଧରିଥିବା ଜିନିଷତକ ଆତ୍ମଗର୍ବରେ ତଳେ ଅଜାଡ଼ି ଦେଲା । କିନ୍ତୁ ହାୟରେ ହାୟ ! ସେଥିରୁ କଣ ଅଜାଡ଼ି ହୋଇ ପଡ଼ିଲା ଜାଣିଛ ? ଅଜାଡ଼ି ହୋଇ ପଡ଼ିଲେ ଗୁଡ଼ାଏ ଧଣ୍ଡସାପ ଆଉ ଲୁଣିବେଙ୍ଗ । ସାପଗୁଡ଼ାକ ତାକୁ କାମୁଡ଼ିବାକୁ ଗୋଡ଼ାଇଲେ, ବେଙ୍ଗଗୁଡ଼ାକ ତା ଉପରକୁ ଫୁକୁରୁ ଫାକୁରୁ ହୋଇ ଡେଇଁବାକୁ ଲାଗିଲେ । ସେ ବିଚାରୀ ବାପାଲୋ ମାଆଲୋ ହୋଇ ଏଣେତେଣେ ଦୌଡ଼ିଲା । ସମସ୍ତେ ନାକଟେକି କହିବାକୁ ଲାଗିଲେ, "ଛିଆଲୋ, ଛିଆ ! ଏଇ ସୌଭାଗ୍ୟ ଦେଖେଇ ହେବାକୁ ଏତେ ଡାକିହେଉଥିଲୁ !!"

## ତିନି ବିଧା

ଅନେକ ଦିନ ତଳର କଥା । ଜଣେ ରାଜା ଗୋଟିଏ ଆତ ବଗିଚା କରିଥିଲେ । ଗଛଗୁଡ଼ିକ ବଡ଼ ସୁନ୍ଦର ବଢ଼ିଥାଏ । ସେ ବଗିଚାରେ ଫି ବର୍ଷ ଫଳ ଆସେ । ଫଳଗୁଡ଼ିକ ବଡ଼ ଯିମିତି, ସୁଆଦ ସିମିତି । କିନ୍ତୁ ଫଳ ଫଳିବା ଦିନଠାରୁ ରାଜା ସେଥିରୁ ଗୋଟିଏ ହେଲେ ଫଳ ଖାଇବାକୁ ପାଇନଥାନ୍ତି । କେଉଁଠୁ ସେ ଚୋର ଆସନ୍ତି କେଜାଣି, ଫଳଗୁଡ଼ିକ ଠିକ୍ ପାଚି ଆସୁ ଆସୁ ଏକାରାତିକେ ସବୁଫଳ ତୋଳାଇ ନିଅନ୍ତି । ବର୍ଷା ପବନରେ ଯେଉଁ କେତେଟା ପୋଚିଫାଟି ଝଡ଼ି ପଡ଼ିଥାଏ କେବଳ ସେହି କେତେଟା ଦେଖିବାକୁ ପାଆନ୍ତି । ସବୁ ବର୍ଷ ଫଳ ଆସିଲା, ସବୁ ବର୍ଷ ଚୋରି ହୋଇଗଲା ଦେଖି ସେ ଜଗୁଆଳିକୁ ନାନା ଭାବରେ ତାଗିଦ୍ କଲେ । କିନ୍ତୁ ସେ ବିଚରା କଣ କରିବ ? ମଣିଷ ହୋଇ କାହାର ଏବେ ରାତି ଭିତରେ ଥରେ ଅଧେ ଆଖି ପଡ଼ିନଯିବ ! ଟିକିଏ ଛାଇନିଦ ଚାଲି ଆସିବା ବେଳକୁ ଚୋର ଆସି ସାରା ବଗିଚାଟାରେ କଳାକନା ବୁଲେଇଦେଇ ପଳାଇଯାଏ ।

ଆଉ ଜଗୁଆଳଦେଇ ଲାଭ ନାହିଁ ଦେଖି ସେ ବର୍ଷ ଫଳ ପାଚିବା ଦିନ ଆସୁ ଆସୁ ରାଜା ନିଜ ବଡ଼ପୁଅକୁ ଆତ ବଗିଚା ଜଗିବାଲାଗି ପଠାଇଦେଲେ । ବଡ଼ପୁଅ ତାର ଖଣ୍ଡା କାତି ଧରି ରାତିତମାମ ଜଗେ । ଇମିତି ସପ୍ତାହେ ଖଣ୍ଡେ ପରେ ଫଳ ଠିକ୍ ପାଚିଆସିଲା । ଆଉ ଦିନେ ଦୁଇଦିନ ଭିତରେ ଆତ ତୋଳା ହେବ, ଏ ଅବସ୍ଥାରେ ସେ ଦିନ ରାତିରେ ବଡ଼ପୁଅ ଆଖିକି ଟିକିଏ ଛାଇନିଦ ଆସିଗଲା । ପତା ପଡ଼ୁ ପଡ଼ୁ ନିଘୋଡ଼ ନିଦ ମାଡ଼ି ଆସିଲା । ସେ ନିଘୋଡ଼ ନିଦରେ ଶୋଇଛି, ଚୋର ଆସି ସବୁତକ ଆତ ତୋଳି ନେଲା । ବଡ଼ପୁଅ ନିଦରୁ ଉଠି ଆଖି ମଳି ମଳି ଚାହିଁଦିଏ ତ ଗଛରେ ଆଉ ଗୋଟିଏ ହେଲେ ଆତ

ନାହିଁ। ତା ପରଦିନ ସକାଳୁ ରାଜା ଏ ଖବର ପାଇ ବଡ଼ ଦୁଃଖ କଲେ। କହିଲେ ଅସଲ କାମବେଳକୁ ଯେଉଁ ଗୁଡ଼ାକ ଶୋଇପଡ଼ନ୍ତି ସେଗୁଡ଼ାକ ନିପଟ ଅଳସୁଆ; ସେମାନଙ୍କ ଦେଇ କିଛି ହେବ ନାହିଁ।

ତା'ପର ବର୍ଷ ଯେତେବେଳେ ଫଳ ପାକଳ ହୋଇଆସିଲା ରାଜା ତାଙ୍କ ମଝିଆ ପୁଅକୁ ବଗିଚା ଜଗିବା କାମରେ ନିଯୁକ୍ତ କରିଦେଲେ। ସେ ତାର ବର୍ଚ୍ଛା ଧରି ଖୁବ୍ ସାବଧାନରେ ଜଗିଲା। କିନ୍ତୁ ସେ ବି ତା ବଡ଼ଭାଇ ପରି ଅଳସୁଆ। ଫଳ ତୋଳା ହେବା ଆଗଦିନ ରାତିରେ ସେ ହାଇ ମାରି ମାରି ଶୋଇପଡ଼ିଲା। ସେ ନିଘୋଡ଼ ନିଦରେ ଶୋଇଛି, ଚୋର ପଶି ସବୁତକ ଆତ ତୋଳିନେଲା। ଖଡ଼ଖାଡ଼ ଶବ୍ଦ ଶୁଣି ସେ ଧଡ଼ପଡ଼ ହୋଇ ଉଠିବସିଲା। କିନ୍ତୁ ଆଶ୍ଚର୍ଯ୍ୟ କଥା, ଚୋରଫୋର କେହି ଦେଖାଗଲେ ନାହିଁ। କେଡ଼େ ଶୀଘ୍ର ଯେ ସେ ଚୋର କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା! ସେ ସକାଳୁ ଆସି ରାଜାଙ୍କୁ ସବୁକଥା ଜଣାଇବାରୁ ରାଜା ଗୁଡ଼ାଏ ଛିଛିକାର କଲେ। ଯାହାହେଉ ଚୋର ଏପରି ଅଦୃଶ୍ୟ ହୋଇଯିବା କଥା ଶୁଣି ସେ କହିଲେ, "ଏ ତା'ହେଲେ ସାଧାରଣ ଚୋର ନୁହେଁ। ଏତେଗୁଡ଼ାଏ ଗଛର ଫଳ ଏତେ ଶୀଘ୍ର ତୋଳି ନେଇ ଏପରି ଅଦୃଶ୍ୟ ହୋଇ ଯାଉଛି ମାନେ ସେ ନିଶ୍ଚୟ କେହି ମାୟାବୀ ଅସୁର ହୋଇଥିବ।"

ବାପାଙ୍କ ମୁହଁରୁ ଏକଥା ଶୁଣି ତାଙ୍କ ସାନପୁଅ କହିଲା, "ଦେଖିବା, ଆସନ୍ତା ବର୍ଷକୁ ମୁଁ ଜଗିବି।" ତା କଥା ଶୁଣି ବଡ଼ଭାଇ ଥଟ୍ଟା କରି କହିଲା, "ବଡ଼ ବଡ଼ ଗଲେ ଫସର ଫାଟି, ସାନ ଆସିଲେ ବେସର ବାଟି! ତୁ ଗୋଟାଏ କଣ ଜଗିବୁ!!" ରାଜା କହିଲେ, "ଆରେ ବ୍ୟସ୍ତ କାହିଁକି ହେଉଛ। ସେ ଥରେ ଜଗୁ, ତୁମେ ବି ତା ପାଖେ ପାଖେ ଥିବ; ଦରକାର ପଡ଼ିଲେ ତାକୁ ସାହାଯ୍ୟ କରିବ।" ତେଣୁ ତା ପର ବର୍ଷ ଫଳ ପାକଳ ହୋଇଆସିବା ବେଳକୁ ରାଜା ସାନପୁଅକୁ ଆତ ବଗିଚା ଜଗିବାକୁ ପଠାଇଦେଲେ। ରାଜାଙ୍କ ସାନପୁଅ ଶର ବିନ୍ଧିବାରେ ଧୁରନ୍ଧର। ତା ଶର କେବେ ବ୍ୟର୍ଥ ହୁଏନି। ସେ ତା ଧନୁଶର ଧରି ବଗିଚାକୁ ଚାଲିଲା। ବଡ଼ ଦୁଇଭାଇ ବି ତାକୁ ସାହାଯ୍ୟ କରିବାକୁ ସାଥିରେ ଚାଲିଲେ। କିନ୍ତୁ ବଗିଚାରେ ପହଞ୍ଚି ସେ ଦୁହେଁ ନିଘୋଡ଼ ନିଦରେ ଶୋଇପଡ଼ିଲେ, କହିଥାନ୍ତି, "ଆରେ ଦରକାର ପଡ଼ିଲେ ଆମକୁ ଡାକିବୁ।" ସାନଭାଇ ଶୋଇବା ବାହାନା କରି ରାତିତମାମ ପଲା ଭିତରେ ଲୁଚି ବସିଥାଏ। ତା ଆଖିରେ ନିଦ ବି ପଡ଼େ ନାହିଁ। ସେ ରାତିରେ ମୋଟେ ଶୋଉ ନାହିଁ ଜାଣି ବଡ଼ ଦୁଇଭାଇ ଈର୍ଷାରେ ଜଳିଯାଉଥାନ୍ତି। ତେଣେ ଫଳ ପାଚିଆସିଲା। ତୋଳା ହେବା ଦିନ ଠିକ୍ କରିଦିଆଗଲା! ଆତ ତୋଳା ହେବା ଆଗଦିନ ରାତିରେ ରାତିରେ ପଲା ଉପରେ ବଡ଼ ଦୁଇ ଭାଇ ଶୋଇଛନ୍ତି, ସାନଭାଇ ଧନୁଶର ଧରି ଲୁଚି ବସିଛି, ଏତିକିବେଳେ ବଗିଚା ଭିତରେ ଖୁଡ଼୍‌ଖାଡ଼୍ ଶବ୍ଦ ହେଲା। କିଛି ସମୟ କାନେଇ ବସିବାପରେ ସାନଭାଇ ଚାହିଁ ଦେଖିଲା ଗୋଟାଏ ଛାଇଛାଇକା ଲୋକ ବିଜୁଳି ବେଗରେ ଆତଗୁଡ଼ାକ ତୋଳି ପକାଉଛି। ଲୋକଟା ତାଳଗଛ ପରି ଉଚ୍ଚା, ତା ହାତଗୁଡ଼ାକ କଦଳୀପତ୍ର

ପରି ଲମ୍ବା। ଆଙ୍ଗୁଠିଗୁଡ଼ାକ ତାଳ ବରଡ଼ା ପରି ଦିଶୁଥାଏ। ଏ ନିଶ୍ଚୟ ଗୋଟାଏ ଅସୁର ବୋଲି ଜାଣି ସାନପୁଅ ଆଉ ପଲା ଉପରୁ ତଳକୁ ଓହ୍ଲାଇଲା ନାହିଁ। ସେହି ଉପରେ ବସି ଏପରି ଗୋଟିଏ ଶର ମାରିଲା ଯେ, ଶରଟା ଯାଇ ସେ ଅସୁରର ମଝି କପାଳରେ ବିନ୍ଧିହୋଇଗଲା। ଅସୁର କି ଆଉ ରହେ! ପ୍ରାଣବିକଳରେ ଆତଗୁଡ଼ାକ ଫୋପାଡ଼ି ଦେଇ ପବନ ବେଗରେ ସେଠାରୁ ପଳାଇଲା। "ଗଲା, ଗଲା, ସେ ବଦ୍‌ମାସ୍ ଚୋରକୁ ଧର ଧର" ବୋଲି ପାଟି କରି ସାନପୁଅ ବଗିଚାଟା କମ୍ପାଇଦେଲା। ବଡ଼ ଦୁଇଭାଇଙ୍କୁ କେତେ ଝାଙ୍କିଲା– କିନ୍ତୁ ସେମାନେ ନ ଉଠି କହିଲେ, "ଆରେ ଏ ଅଧରାତିରେ ଚୋର ପଛରେ କିଏ ଦଉଡ଼ିବ? ଯିବୁ ଯଦି ତୁ ଯାଆ।"

ସେ ବିଚରା ଆଉ ଉପାୟ ନ ଦେଖି ଧନୁଶର ଧରି ଏକା ଏକା ଚୋର ପଛରେ ଦୌଡ଼ିଲା– କିନ୍ତୁ ଅସୁରକୁ ଆଉ ଧରିପାରିଲା ନାହିଁ। ଅସୁରଟା କେଉଁଆଡ଼େ ଅଦୃଶ୍ୟ ହୋଇଗଲା ଜାଣିହେଲାନାହିଁ। ସେତେବେଳକୁ ପାହାନ୍ତିଆ ହୋଇଆସୁଥାଏ। ସାନଭାଇ ତଳକୁ ଓହ୍ଲାଇଛି ଦେଖି ବଡ଼ ଦୁଇଭାଇ ବି ତା ପାଖକୁ ଚାଲିଆସିଲେ। ସକାଳର କଅଁଳ ଆଲୁଅରେ ଦେଖାଗଲା ଅସୁରଟା ଯେଉଁ ଦିଗକୁ ଧାଇଁ ପଳାଇ ଯାଇଥିଲା, ସେ ଦିଗରେ ଟୋପା ଟୋପା ରକ୍ତଧାର ପଡ଼ିଛି। ରକ୍ତ ଦାଗ ଦେଖି ଦେଖି ଯାଉ ଯାଉ ସେମାନେ ଦେଖିଲେ ରକ୍ତ ଦାଗ ଯାଇ ଗୋଟିଏ ବଡ଼ କୂଅ ପାଖରେ ଅଦୃଶ୍ୟ ହୋଇଯାଇଛି। ସାନଭାଇ କହିଲା, "ଭାଇ, ଅସୁରଟା ନିଶ୍ଚୟ ଏ କୂଅ ଭିତରେ ଯାଇ ଲୁଚିଛି। ଗୋଟାଏ ଦଉଡ଼ି ଆଣ ଯେ ମୁଁ ଦଉଡ଼ି ଧରି କୂଅ ଭିତରକୁ ପଶିଯିବି। ଅସୁରଟାକୁ ମାରିସାରିଲେ ତୁମକୁ ଡାକିବି, ତୁମେ ମୋତେ ପୁଣି ଉପରକୁ ଟାଣି ଆଣିବ। ସେ ଯେତେବେଳେ ଶରମାଡ଼ ଖାଇଛି, ତାକୁ ଆଉ ନମାରି ଛାଡ଼ିଦେବା ଠିକ୍ ନୁହେଁ।

ତା କଥା ଶୁଣି ବଡ଼ ଦୁଇଭାଇ ଗୋଟିଏ ଲମ୍ବା ଦଉଡ଼ି ଆଣି କୂଅ ଭିତରକୁ ପକାଇଲେ। ସାନଭାଇ ଶିଶିରି ମାରି ମାରି ନିଦକରେ ଦଉଡ଼ି ଧରି କୂଅ ଭିତରକୁ ଓହ୍ଲାଇପଡ଼ିଲା। କୂଅ ଭିତରଟା ଶୁଖିଲା ପଡ଼ିଥାଏ। ସେ ଭିତରେ ବୁଲୁ ବୁଲୁ ତାକୁ ଗୋଟାଏ ପଟରେ ବଡ଼ ରାସ୍ତାଟାଏ ଦେଖାଗଲା। ସେହି ରାସ୍ତାରେ କିଛି ବାଟ ଯିବା ପରେ ସେ ଯାଇ ଗୋଟିଏ ମସ୍ତବଡ଼ ଘରେ ପହଞ୍ଚିଗଲା। ଦେଖିଲା, ସେ ଘର ମଝିରେ ଅସୁରଟା ମରି ପଡ଼ିଛି; ତା ମଝିକପାଳରେ ଶରଟା ସେପରି ଲାଖିଛି। ଅସୁରଟା ମରିଯାଇଛି ଦେଖି ସେ ଭାରି ଖୁସିହୋଇଗଲା। କିନ୍ତୁ ସେଠାରୁ ଫେରିବ ବୋଲି ବସିଛି, ସେ ଘର ଭିତରୁ ତିନୋଟି ଯୁବତୀ ଝିଅ ବାହାରିଆସି ତାକୁ କହିଲେ, "ଆହେ ରାଜକୁମାର, ଆମକୁ ତ ଏ ନିଷ୍ଠୁର ଅସୁର ହାତରୁ ମୁକ୍ତକଲ; ସଙ୍ଗରେ ନନେଇ ଚାଲିଗଲେ, ଆମେ ଅନାଥ ହୋଇ ମରିଯିବୁ ସିନା।"

ସାନପୁଅ ସେ ତିନିଜଣଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା। ବଡ଼ଝିଅଟି ନୀଳ ବର୍ଣ୍ଣର ପୋଷାକ ପିନ୍ଧିଥାଏ; ତା ନୀଳ ପୋଷାକକୁ କଳା ଭଅଁର ପରି ଆଖି ଦୁଇଟି ଖୁବ୍ ସୁନ୍ଦର ଦେଖାଯାଉଥାଏ। ମଝିଅାଁ ଝିଅଟି ପିନ୍ଧିଥାଏ ଗୋଟିଏ ନାଲି

ପୋଷାକ। ସେ ପୋଷାକକୁ ତାର ଅଳତା ପରି ନାଲି ଓଠ ଦୁଇଟି ସତରେ ମନଲୋଭା ହୋଇଥାଏ। ଆଉ ସାନଝିଅଟି ସବୁଠାରୁ ବେଶି ସୁନ୍ଦର। ସେ ପିନ୍ଧିଥାଏ ଗୋଟିଏ ସବୁଜ ପୋଷାକ। ତା ଦେହର କେଉଁଠି ଟିକିଏ ଖୁଣ ଦେବାକୁ ନଥାଏ। ତାକୁ ଦେଖି ଦେଖି ସାନପୁଅ ସତରେ ଯେପରି ମୋହିତ ହୋଇଗଲା। ସେ ପଚାରିଲା, ''ଆଗୋ, ତୁମେ ସବୁ କିଏସେ ? ଏ କୂଅ ଭିତରକୁ କିପରି ଆସିଲ ?''

ବଡ଼ଝିଅଟି କହିଲା, ''ଆମେ ତିନି ରାଜକୁମାରୀ ତିନି ଭଉଣୀ। ଏ ଦୁଷ୍ଟ ଅସୁର ଆମକୁ ବାହାହେବା ପାଇଁ ଚୋରାଇ ଆଣି ଏ ଭିତରେ ରଖିଥିଲା। କିନ୍ତୁ ତାକୁ ବାହା ହେବାକୁ ରାଜି ନ ହେବାରୁ ସେ ପାପୀ ଆମକୁ ବହୁତ କଷ୍ଟ ଦେଉଥିଲା। ଏବେ ମରିଛି, ଭଲ ହୋଇଛି।''

ସାନପୁଅ କହିଲା, ''ମୋର ବଡ଼ ଦୁଇଭାଇ କୂଅ ଉପରେ ଜଗିଛନ୍ତି। ଆମେ କେହି ବାହା ହୋଇନାହୁଁ। ଚାଲ ତୁମେ ଆମ ନଅରକୁ ଚାଲିଯିବ ଯେ, ବାପାଙ୍କୁ ପଚାରି ଆମେ ତୁମକୁ ବାହା ହୋଇଗଲେ ସବୁ ଅଡୁଆ ତୁଟିଯିବ।'' ସେ ତିନି ଭଉଣୀ ଏଥିକି ଅମଙ୍ଗ ବା କାହିଁକି ହୁଅନ୍ତେ ? ସାନପୁଅ ସେମାନଙ୍କୁ ନେଇ ଦଉଡ଼ି ପାଖକୁ ଆସି ଦଉଡ଼ି ହଲାଇ ଉପରକୁ ଚାହିଁ ଖୁବ୍ ପାଟି କରି ଭାଇମାନଙ୍କୁ କହିଲା, ''ଭାଇ, ସେ ଚୋର ଅସୁରଟା ମରିଯାଇଛି, ଆଉ ଏ ଭିତରେ ତିନିଟି ସୁନ୍ଦରୀ ଝିଅ ଅଛନ୍ତି ଯେ ଏମାନ ଆମକୁ ବାହା ହେବାକୁ ରାଜି ଅଛନ୍ତି; ଏମାନଙ୍କୁ ଉପରକୁ ଟେକିନିଅ।''

ବଡ଼ ଦୁଇଭାଇ ଖୁସିରେ ପାଟିକରି କହିଲେ, ''ଦେ, ପଠା, ପଠା।'' ସାନଭାଇ ବଡ଼ ଦୁଇଭଉଣୀଙ୍କୁ ଦଉଡ଼ି ଧରାଇଦେଇ କହିଲା, ''ତୁମେ ତ ମୋର ଭାଉଜ ହେବ, ତୁମେ ଆଗ ଯାଅ।'' ତା'ପରେ ଭାଇମାନଙ୍କୁ ଶୁଣାଇଦେଲା– ହେଇଟି; ବଡ଼ ଦୁଇଭଉଣୀ ଆଗ ଗଲେ, ଟେକ।''

ସେ ଦୁଇଭାଇ ଏ ଦୁଇ ଭଉଣୀଙ୍କୁ ଟେକିନେଉଥାନ୍ତି, ସାନପୁଅ ସାନଭଉଣୀକୁ କହିଲା, ''ଆଗୋ ସୁନ୍ଦରୀ, ମୁଁ ତୁମକୁ ବାହାହେବି; ତୁମ ଆଗରେ ସେ ଦୁଇଜଣ କି ସୁନ୍ଦରୀ ?''

ସାନଭଉଣୀ କହିଲା, ''ମୋର ବି ତୁମକୁ ବାହାହେବାକୁ ମନ। କିନ୍ତୁ ଉପରକୁ ଗଲେ ତୁମ ଭାଇମାନେ ଯେତେବେଳେ ଦେଖିବେ ଯେ ମୁଁ ସବୁଠାରୁ ବେଶି ସୁନ୍ଦରୀ, ସେତେବେଳେ ତୁମ ବଡ଼ଭାଇ ମୋତେ ବାହାହେବାକୁ ଜିଦ୍ ଧରିପାରନ୍ତି। ଏପରି ବି ହୋଇପାରେ ଯେ, ସେ ଆଉ ତୁମକୁ ଟେକିନେବେ ନାହିଁ। ତେଣୁ ତୁମେ ଆଗ ଉପରକୁ ଉଠିଯାଅ, ମୁଁ ପଛେ ଯିବି; ଉପରକୁ ଯିବା ପରେ କଣ କଲେ ତୁମ ବଡ଼ଭାଇଙ୍କ ଦାଉରୁ ରକ୍ଷା ମିଳିବ, ସେ କଥା ଦେଖିବା।''

ସାନଭାଇ କହିଲା, ''ଏ ଗୋଟାଏ କଥା ନା ! ଝିଅଟାକୁ ତଳେ ଏକୁଟିଆ ଛାଡ଼ିଦେଇ ମୁଁ ଆଗ ଖସିଯିବି। ତା ହେବନି; ମୁଁ ବରଂ ଏଠାରେ କଷ୍ଟ ପାଏ, ମାତ୍ର ତୁମେ ଆଗେ ଉପରକୁ ଯାଅ। ତୁମେ ଯଦି ସତରେ ମୋତେ ଭଲପାଉଛ, ତେବେ ତୁମେ କଣ ବୁଦ୍ଧି ବିବେକ ଖଟେଇ କାମ କରିବ ନାହିଁ ?''

ଏହା ଶୁଣି ସାନଭଉଣୀ ସାନଭାଇ ହାତକୁ ତିନିଟି ବାଦାମଫଳ ବଢ଼ାଇ ଦେଇ କହିଲା, ''ଏ ଫଳ ତିନୋଟି ପାଖରେ ସାଇତି ରଖ। ଏ ତିନୋଟିରେ ତିନି ରଙ୍ଗର ପୋଷାକ ଅଛି, ଦରକାର ବେଳେ କର୍ମରେ ଆସିବ। ଆଉ ଶୁଣ, ଯଦି ତୁମ ଭାଇମାନେ ତୁମକୁ ଉପରକୁ ଟେକିନନିଅନ୍ତି, ତେବେ ତୁମେ ଏଠାରେ ଅପେକ୍ଷା କର; କିଛି ସମୟ ପରେ ଏଠାକୁ ଦୁଇଟି ଛେଳି ଆସିବେ– ଗୋଟିଏ ଧଳା ଓ ଅନ୍ୟଟି କଳା। ଧଳା ଛେଳିଟି ଆସିବାମାତ୍ରେ ତୁମେ ତା ବେକମୁଣ୍ଡା ଧରିପକାଇ ତା ଉପରେ ବସିପଡ଼ିବ। ସେ ତୁମକୁ ଏ କୂଅ ଉପରକୁ ନେଇଯିବ। କିନ୍ତୁ ଯଦି ଧଳା ଛେଳି ଉପରେ ନବସି କଳାଟି ଉପରେ ବସିପଡ଼ିବ, ତେବେ ସେ ତୁମକୁ ଏ କୂଅ ତଳେ ଥିବା ପାତାଳପୁରକୁ ନେଇଯିବ।'' ଏତକ କହି ସେ ସାନପୁଅଠାରୁ ବିଦାୟ ନେଇ ଦଉଡ଼ି ଧରିପକାଇଲା। ବଡ଼ ଦୁଇଭାଇ ତାକୁ କୂଅ ଉପରକୁ ଟେକି ନେଲେ। ସେମାନେ ଯେତେବେଳେ ଦେଖିଲେ ଏ ସାନଭଉଣୀଟି ବଡ଼ ଦୁଇଟି ଅପେକ୍ଷା ବେଶି ସୁନ୍ଦର, ସେତେବେଳେ ବଡ଼ଭାଇ କହିଲା ସେ ତାକୁ ବାହାହେବ। ସେମାନେ ସେ ଝିଅ ତିନୋଟିକୁ ନେଇ ସେଠାରୁ ପଳାଇଗଲେ। ସାନଭାଇ କେତେ ଡାକିଲା; କିନ୍ତୁ ତା ଆଡ଼କୁ ସେମାନେ ଟିକିଏ ଚାହିଁଲେ ବି ନାହିଁ। କହିଲେ, ''ତୁ ସେ କୂଅ ଭିତରେ ମର; ତୁ ଉପରକୁ ଆସିଲେ ଆମକୁ ଲୋକେ ନାନା ଅପମାନ ଦେବେ। ବଡ଼ ଦୁଇଭାଇ ନଅରକୁ ଯାଇ ରାଜାଙ୍କୁ କହିଲେ, ''ବାପା, ସାନଭାଇକୁ ସେ ଅସୁର ଖାଇଗଲା।''

ସାନଭାଇ ବିଚରା ଭାଗ୍ୟ ଆଦରି ସେହି ବାଦାମଫଳ ତିନୋଟି ଧରି କୂଅ ଭିତରେ ବସିପଡ଼ିଲା। ବସି ବସି ସଂସାର ଲୋକଙ୍କ ରୀତିନୀତି କଥା ଭାବୁଛି, ଏ ସମୟରେ ସେଠାକୁ ଗୋଟିଏ ମସ୍ତବଡ଼ ଧଳା ଛେଳି ଆସିଲା। ସାନ ରାଜାପୁଅ ଛେଳିଟିର ବେକମୁଣ୍ଡା ଧରି ତା ଉପରେ ବସିବାକୁ ଯେତେ ଚେଷ୍ଟା କଲା, ପାରିଲା ନାହିଁ। ଶେଷକୁ ଛେଳିଟା ଏପରି ହୁରୁଡ଼ି ଗଲା ଯେ ସେଠାରୁ ଦୌଡ଼ି ପଳାଇଲା। ରଜାପୁଅ କାନମୁଣ୍ଡା ଆଉଁସି ବସିଛି, କଳା ଛେଳିଟି ଆସି ପହଞ୍ଚିଗଲା। ଏଥର ସେ ଛେଳିଟିକୁ ନ ହୁରୁଡ଼ାଇ ଆଦରରେ ଅଣ୍ଟାଳି ଆଉଁସି ତା ଉପରେ ଚଢ଼ିଗଲା। ସତକୁ ସତ କଳା ଛେଳିଟି ତାକୁ ନେଇ ପାତାଳପୁରରେ ଛାଡ଼ିଦେଲା। ମଲେ ପଛେ ମରିବି, ଟିକିଏ ପାତାଳପୁରଟା ଦେଖିବି ବୋଲି ରଜାପୁଅ ଏଣେତେଣେ ବୁଲୁ ବୁଲୁ ଆସି ଗୋଟିଏ ତୋଟାରେ ପହଞ୍ଚିଗଲା। ସେ ତୋଟାରେ ଯେଉଁ ଗଛସବୁ ଥାଏ, ରଜାପୁଅ ସେପରି ଗଛ କେବେ କେଉଁଠି ଦେଖିନଥିଲା। ସେ ଗଛର ପତ୍ର ଯେପରି ବିଚିତ୍ର, ଫଳ ଫୁଲ ବି ସେପରି ବିଚିତ୍ର। ସେ ସେଥିରୁ ଗୋଟିଏ ବଡ଼ ଗଛକୁ ଚାହିଁଛି, ଦେଖିଲା, ଗଛ ଡାଳରେ ଗୋଟିଏ ଚଢ଼େଇ ତା ବସା କରିଛି; ସେଥିରେ କେତୋଟି ଅଣ୍ଡା ସେଇଲାଗେ ଫାଟିଛି ଯେ ଛୁଆଗୁଡ଼ିଏ ଚୁଁ ଚୁଁ କରୁଛନ୍ତି। ସେଗୁଡ଼ାକ କି ଚଢ଼େଇ ହେବେ ବୋଲି ରାଜାପୁଅ ଭାବୁଛି ଏ ସମୟରେ ଦେଖିଲା ଗୋଟିଏ କଳା ସାପ ଆସି ସେ ଗଛରେ ଚଢ଼ିବାକୁ ବସିଛି। ଏ ପାପିଷ୍ଠ ଗଛରେ ଚଢ଼ି ବିଚରା ଛୁଆଗୁଡ଼ିକୁ ଖାଇଯିବ ବୋଲି ଭୟକରି ସେ

ସଙ୍ଗେ ସଙ୍ଗେ ସେଠାରେ ପଡ଼ିଥିବା ଗୋଟିଏ କାଠରେ ସାପଟିକୁ ପିଟିପିଟି ମାରିଦେଲା। ଠିକ୍ ସେହି ସମୟରେ ସେ ଛୁଆଙ୍କର ମାଆ ଚଢ଼େଇ ଆସି ଗଛ ପାଖରେ ପହଞ୍ଚିଗଲା। ରଜାପୁଅ ସାପଟି ମାରି ତା ଛୁଆଙ୍କୁ ମରଣମୁହଁରୁ ରକ୍ଷା କରିଛି ଦେଖି ମାଆ ଚଢ଼େଇ ଆସି କହିଲା, "ଧନ୍ୟ ଧନ୍ୟ ତୁମ ସାହସକୁ! ଆଜି ତୁମେ ମୋର ଖୁବ୍ ଉପକାର କରିଛ। ତୁମ ବିନା ଏ ସାପ ମୋ ବଂଶ ବୁଡ଼ାଇ ଦେଇଥାନ୍ତା। ମୁଁ ତୁମର କି ଉପକାର କରି ଏ ଋଣ ଶୁଝିବି କହ।"

ରଜାପୁଅ କହିଲା, "ମୋର ଯଦି ଉପକାର କରିବୁ ବୋଲି କହୁଛୁ, ତେବେ ଦୟାକରି ମୋତେ ତୋ ପିଠିରେ ବସାଇ ମୁଁ ଯେଉଁ ମର୍ତ୍ତ୍ୟପୁରରୁ ଆସିଛି, ସେହି ମର୍ତ୍ତ୍ୟପୁରକୁ ନେଇଯାଆ।"

ସେ ତ କିଛି ସାଧାରଣ ଚଢ଼େଇ ନୁହେଁ; ଏକ ବିରାଟ ଚଢ଼େଇ। ସେ ସଙ୍ଗେ ସଙ୍ଗେ ରଜାପୁଅକୁ ନିଜ ପିଠି ଦେଖାଇଦେଲା। ରଜାପୁଅ ଯାଇ ତା ପିଠିରେ ବସୁ ବସୁ ସେ ଉଡ଼ି ଉଡ଼ି ଆକାଶମାର୍ଗକୁ ଉଠିଗଲା। ଅନେକ ସମୟ ଉଡ଼ିବାପରେ ସେ ଆସି ମର୍ତ୍ତ୍ୟପୁରର ଗୋଟିଏ ପାହାଡ଼ ଉପରେ ଓହ୍ଲାଇପଡ଼ିଲା ଏବଂ ରଜାପୁଅକୁ ସେଠାରେ ଛାଡ଼ି ଅନେକ ଧନ୍ୟବାଦ ଦେଇ ନିଜ ଛୁଆଙ୍କ ପାଖକୁ ଫେରିଗଲା। ରଜାପୁଅ ଅନେକ ଦିନ ଚାଲିବାପରେ ଶେଷରେ ଆସି ତା ବାପାଙ୍କ ରାଜ୍ୟରେ ପହଞ୍ଚିଗଲା। ରାଜାଙ୍କ ନଗରରେ ପହଞ୍ଚିବା ବେଳକୁ ସନ୍ଧ୍ୟା ହୋଇଯାଇଥାଏ। କେଉଁଠି ଗୋଟିଏ ଅଚିହ୍ନା ଜାଗାରେ ରାତିଟା ରହିଗଲେ ସକାଳେ [illegible] ଖବର ଅନ୍ତର ବୁଝି ତା କଲାକାମ କରିବ ବୋଲି ସେ ବଜାର ଭିତର [illegible] ବୁଲୁ ଗୋଟିଏ ଦରଜି ଦୋକାନରେ ଆସି ପହଞ୍ଚିଗଲା। ସେ ଦରଜି ବୁଢ଼ା ତାକୁ କେବେ ଦେଖିନି ଜାଣି ରଜାପୁଅ ଦୋକାନ ଭିତରେ ପଶିଯାଏ ତ [illegible] ଦେଖିଲା, ଦରଜି ବୁଢ଼ା ଥାନ ଥାନ କରି କପଡ଼ା ମେଲାଇ ସେ ମଝିରେ ବସି କାନ୍ଦୁଛି। ବୁଢ଼ାଟା କାହିଁକି ଏପରି କାନ୍ଦୁଛି କିଛି ବୁଝିହେଲା ନାହିଁ। ଶେଷରେ ରଜାପୁଅ ପଚାରିଲା, "କିହୋ ମଉସା, ଏ କି ଆଶ୍ଚର୍ଯ୍ୟ କଥା! ଲୁଗାପଟାଗୁଡ଼ାକ ଏପରି ମେଲାଇ ଦେଇ ହାତରେ ଛୁଞ୍ଚିସୂତା ଧରି କାମ ନକରୁଣୁ ତୁମେ ଏ ବୟସରେ ପିଲାଙ୍କ ପରି କଣ କାନ୍ଦୁଛ? ମତେ କହୁନା, ଯଦି ପାରିବି ମୁଁ ତୁମକୁ କିଛି ସାହାଯ୍ୟ କରିବି।"

ଦରଜି ବୁଢ଼ା କହିଲା, "ବାପରେ, ଏ କଣ ସାମାନ୍ୟ କଥା ହୋଇଚି ଯେ ତତେ କହିବି। ତିନି ତିନି ସାର ପୋଷାକ ଆଜି ରାତିକ ଭିତରେ ହୋଇଯିବା ଦରକାର। ସେ ପୁଣି ସାଧାରଣ ପୋଷାକ ନୁହେଁ ରେ ବାପ, ରଜାଘର ନୂଆବୋହୂ ପିନ୍ଧିବାପରି ପୋଷାକ।"

"ଆହେ, ଆମ ଏହି ରଜାଘର ପୁଅମାନେ ବାହା ହେଲେ କେବେ ଯେ ବୋହୂ ଆସିଲେ ମ?"

"ତୁ ତା'ହେଲେ କିଛି ଜାଣିନୁ? ଆରେ ବାବୁ, ରଜାଙ୍କ ବଡ଼ପୁଅ ଗୋଟିଏ କୂଅମୂଳରୁ ଦେବୀ ପ୍ରତିମା ପରି ସୁନ୍ଦର ଝିଅଟିଏ ଧରିଆଣିଛନ୍ତି। କାଲି ତା'ରି

ସହିତ ଯୁବରାଜଙ୍କର ବାହାଘର ହେବ। ସେ ଝିଅ ବରାଦ କରିଛି ଯଦି ତା ପାଇଁ ତିନିସାର ପୋଷାକ ଏହି ରାତିକ ଭିତରେ ତିଆରି କରି ପାରିବେ, ତେବେ ଯାଇ ସେ ବାହାବେଦିକୁ ଯିବ; ନ ହେଲେ ନାହିଁ। ସେଥିରୁ ଗୋଟିଏ ପୋଷାକ ହେବ ଆକାଶୀ ନୀଳ ରଙ୍ଗର, ସେଥିରେ ସୂର୍ଯ୍ୟ, ଚନ୍ଦ୍ର, ତାରାଙ୍କ ଛବି ବୁଣା ହୋଇ ଠିକ୍ ଆକାଶ ପରି ଦେଖାଯାଉଥିବ। ଆଉ ଗୋଟିଏ ହେବ ସମୁଦ୍ର ପାଣି ପରି ନୀଳ। ସେଥିରେ ମାଛ, କଇଁଛ, କୁମ୍ଭୀର ପ୍ରଭୃତିଙ୍କ ଛବି ବୁଣାହୋଇଥିବ—ପିନ୍ଧିବା ଲୋକ ସମୁଦ୍ରରେ ପହଁରୁଥିବାପରି ଦେଖାଯିବ। ତୃତୀୟଟି ହେବ ସବୁଜ, ପୃଥିବୀ ରଙ୍ଗର। ସେଥିରେ ନାନା ଜାତିର ଡାଳି ଲତା, ଫୁଲଫଳ ସବୁ ଅଙ୍କାହୋଇଥିବ ଯେ ପିନ୍ଧିବା ଲୋକ ବନଲତା ଭିତରେ ପଶି ବୁଲୁଥିବାପରି ଦେଖାଯିବ। ଯୁବରାଜ ମତେ ଏ ନଗରର ସବୁଠୁ ବଡ଼ ଦରଜି ବୋଲି ଜାଣି ଏ କାମ ବରାଦ କରିଛନ୍ତି; କିନ୍ତୁ ଏ କାମ ଯଦି ଆଜି ରାତିକ ଭିତରେ ଶେଷ ନ ହୁଏ, ତେବେ କାଲି ସକାଳୁ ମୋ ଗଣ୍ଡି ମୁଣ୍ଡ ଦୁଇଭାଗ କରିଦିଆଯିବ। ଏ କାମ ତ ରାତିକ ଭିତରେ ଶେଷ ହୋଇପାରିବ ନାହିଁ, ତେଣୁ ବସି ମନୋଦୁଃଖରେ କାନ୍ଦୁଛି।''

କୂଅ ଭିତରେ ତିନିଭଉଣୀଙ୍କ ଭିତରୁ ସାନଭଉଣୀଟି ତାକୁ ଯେଉଁ ତିନିଟି ବାଦାମଫଳ ଦେଇଥିଲା, ରଜାପୁଅ ସେ ଫଳ ତିନିଟି ପାଖରେ ସାଇତି ରଖିଥାଏ। ସେ ଭାବିଲା, ବୋଧହୁଏ ସେ ଝିଅଟି ଏହି ଫଳ ଭିତରେ ଥିବା ତିନିଟି ପୋଷାକ ପରି ପୋଷାକ କଥା କହିଛି; ସେ ମର୍ତ୍ତ୍ୟପୁରକୁ ଫେରିଲାଣି କି ନାହିଁ ଜାଣିବାଲାଗିହିଁ ଝିଅଟି ଏପରି ଅସମ୍ଭବ ପୋଷାକ ବରାଦ କରିଛି। ତେଣୁ ରଜାପୁଅ ଦରଜି ବୁଢ଼ାକୁ କହିଲା, ''ମଉସା, ତୁମେ ଚିନ୍ତା କର ନାହିଁ। ତୁମେ ତୁମର କାମ କରୁଥାଅ, ମତେ ଅଲଗା ବଖରାଟିଏ ଦିଅ ଯେ ମୁଁ ସେ ଭିତରେ ନିରୋଳାରେ ବସି ରାତିକ ଭିତରେ ତିନିସାର ପୋଷାକ ସିଲେଇ କରିଦେବି।''

କାଳେ କାମଟା ହୋଇ ଯାଇ ପାରିବ ଭାବି ଦରଜି ବୁଢ଼ା ତାକୁ ଗୋଟିଏ ଅଲଗା ବଖରା ଦେଖାଇଦେଲା। ରଜାପୁଅ ତିନି ଥାଳି ଜଳଖିଆ ଓ ତିନି ଗ୍ଲାସ ସରବତ୍ ଧରି ସେ ବଖରା ଭିତରେ କବାଟ କିଳି ବସିଗଲା। ପ୍ରଥମେ ଥାଳିଏ ଜଳଖିଆ ଖାଇ ଗ୍ଲାସେ ସରବତ୍ ପିଇ ଦେବା ପରେ ସେ ଗୋଟିଏ ବାଦାମ ଫଳ କାଢ଼ି ତା ଉପରେ ଏପରି ଏକ ବିଧା ବସାଇଲା ଯେ ଫଳଟା ଦୁଇଫାଳ ହୋଇଗଲା। ଦେଖାଗଲା ସେ ଭିତରେ ଆକାଶୀ ନୀଳ ରଙ୍ଗର ସାରେ ପୋଷାକ ରହିଛି; ସେ ପୋଷାକ ଠିକ୍ ସେ ଝିଅ ବରାଦ ଦେଇଥିବା ପୋଷାକ ପରି ହୋଇଛି। ରଜାପୁଅ ହାତ ଆଉଁସି ଆଉ ଥାଳିଏ ଜଳଖିଆ ଖାଇଦେଇ ଓ ଆଉ ଗ୍ଲାସେ ସରବତ୍ ପିଇଦେଲା। ଟିକିଏ ତାଜା ହୋଇ ବସିବା ପରେ ଦ୍ୱିତୀୟ ବାଦାମ ଫଳଟା ବାହାର କରି ତା ଉପରେ ଏକ ବିଧା ପକାଇଦେଲା ଯେ ଫଳଟା ଦୁଇଫାଳ ହୋଇଗଲା। ସେ ଫଳ ଭିତରୁ ଠିକ୍ ସେହି ଝିଅ ବରାଦ ଦେଇଥିବା ଢଙ୍ଗର ସମୁଦ୍ର-ନୀଳ ପରି ଏକ ନୀଳ ପୋଷାକ ବାହାରି ପଡ଼ିଲା। ରଜାପୁଅର ଖୁସି ଦେଖେ କିଏ! ଟିକିଏ ହାଲିଆ ମାରିବା ପରେ ସେ ପୁଣି ଥାଳିଏ ଜଳଖିଆ

ଖାଇଦେଇ ଶେଷ ଗ୍ଲାସକ ସରବତ୍ ପିଇଦେଲା । ଏଥର ତୃତୀୟ ବାଦାମ ଫଳଟା କାଢ଼ି ତା ଉପରେ ଏପରି ଏକ ଚଉକସ ବିଧା ଦେଲା ଯେ ଫଳଟା ଦୁଇଫାଳ ହୋଇଗଲା ଏବଂ ସେ ଭିତରୁ ବାହାରି ପଡ଼ିଲା ସେ ଝିଅ ବରାଦ ଦେଇଥିବା କାଟର ଡାଳି ଲତା ଫୁଲଫଳ ଅଙ୍କା ହୋଇଥିବା ଏକ ସବୁଜ ପୋଷାକ । ପୋଷାକ ତିନୋଟି ଭାଙ୍ଗପକାଇ ରଖିଦେଇ ରଜାପୁଅ ଆରାମରେ ଶୋଇପଡ଼ିଲା । ସକାଳୁ ସକାଳୁ ଦରଜି ବୁଢ଼ା ସେ ବଖରାର କବାଟ ଖୋଲି ଦେଇ ପଚାରିଲା, ''ହଇରେ ପୁଅ, ମୁଁ ଭାବୁଛି ତୁ ପୋଷାକ ତିଆରି କରୁଛୁ– ତୁ କଣ ନା, ଏ ଭିତରେ ବାଦାମ ଖାଇ ଶୋଇଛୁ !''

ରଜାପୁଅ ଧଡ଼ପଡ଼ ହୋଇ ଉଠିପଡ଼ି କହିଲା, ''ନାହିଁ ମଉସା, ମୁଁ ପୋଷାକ ତିଆରି କରିସାରି ଟିକିଏ ଆରାମ କରୁଥିଲି । ହେଇଟି ନିଅ ତୁମର ପୋଷାକ ।''

ଦରଜି ବୁଢ଼ା ସେ ପୋଷାକ ଦେଖି ଆବାକାବା ହୋଇଗଲା । ଏଡ଼େ ସୁନ୍ଦର ପୋଷାକ ସେ ତା ଜୀବନକାଳରେ କେବେ ସିଲେଇ କରିନଥିଲା । ଆଉ ବିଳମ୍ବ ନକରି ସେ ପୋଷାକ ତିନୋଟି ନେଇ ରଜାଘରେ ଦେଇଦେଲା । ରାଜନଅରରେ ଧୁମ୍‌ଧାମରେ ବିବାହ ଉତ୍ସବ ଆରମ୍ଭ ହୋଇଗଲା । ବିବାହ ସଭାକୁ ବହୁ ଲୋକ ନିମନ୍ତ୍ରିତ ହୋଇ ଗଲେ । ଦରଜି ବୁଢ଼ା ଓ ତାର ନୂଆ ପୁତୁରା ଓରଫ ରାଜାଙ୍କ ସାନପୁଅ ବି ସେ ସଭାକୁ ଯାଇଥାଏ । ବିବାହ ସଭା ଆରମ୍ଭ ହେଉ ହେଉ ସାନପୁଅ ଉଠି ଠିଆହୋଇପଡ଼ି ରାଜାଙ୍କୁ କହିଲା, ''ବାପା, ମୁଁ ମରିନାହିଁ, ବଞ୍ଚିଛି । ବଡ଼ଭାଇମାନେ ବିଶ୍ୱାସଘାତକତା କରି ମୋତେ ସେ ଅସୁରର କୂଅ ଭିତରେ ଛାଡ଼ିଦେଇ ଆସିଲେ । ଯାହାହେଉ ମୁଁ ସେଠାରୁ ଚାଲିଆସିପାରିଛି । ଏ ଝିଅଟିକୁ ମୁଁ ବାହା ହେବା କଥା; ସତ କି ମିଛ ସେହି ଝିଅଟିକୁ ପଚାରନ୍ତୁ ।''

ରାଜା ଆଉ କଣ ପଚାରିବେ ? ସେ ତ ସାନପୁଅଟି ସବୁଠାରୁ ବେଶି ସାହସୀ ବୋଲି ତାର ପ୍ରଶଂସା କରୁଥିଲେ । ପୁଅ ବଞ୍ଚିଛି ଦେଖି ସେ ବଡ଼ ଦୁଇ ପୁଅଙ୍କୁ ସଙ୍ଗେ ସଙ୍ଗେ ବନ୍ଦୀ କରି ପକାଇଲେ । ସେ ଦୁଇ ଜଣଙ୍କୁ ବନ୍ଦୀ କରି ଟାଣି ନେଉନେଉ, ସାନଭଉଣୀ କହିଲା, ''ମଣିମା, ରାଜକୁମାର ଯାହା କହୁଛନ୍ତି, ସବୁ ସତ । ଯେଉଁ ତିନୋଟି ପୋଷାକ ଦେଖୁଛନ୍ତି, ଏଗୁଡ଼ାକ ମୁଁ ତାଙ୍କୁ ବାଦାମ ଫଳରେ ପୂରାଇ ରଖିବାକୁ ଦେଇଥିଲି । ଏହାକୁ ଦରଜି ତିଆରି କରିନାହିଁ, ଆପଣଙ୍କ ସାନପୁଅ ସେ ପାତାଳପୁରରୁ ଏ ମର୍ତ୍ତ୍ୟପୁରକୁ ଆସିବା ପରେ ଦରଜିକି ଦେଇଛନ୍ତି ।''

ଏ କଥା ଶୁଣୁଶୁଣୁ ଦରଜି ବୁଢ଼ା ଉଠିପଡ଼ି କହିଲା, ''ସତକଥା ମଣିମା, ଏ ସବୁ ମୁଁ ସିଲେଇ କରିନାହିଁ । ଆପଣଙ୍କର ଏହି ପୁଅହିଁ ଏ ସବୁ ଦେଇଛନ୍ତି ।''

ରାଜାଙ୍କର ସବୁ ସନ୍ଦେହ ତୁଟିଗଲା । ସେ ସାନପୁଅକୁ କୋଳକୁ ଟାଣି ଆଣି ସୁନ୍ଦରୀ ଝିଅଟି ସହିତ ତାର ବିବାହ କରାଇଦେଲେ । ବଡ଼ ଦୁଇଭାଇ ନିଜ କଲାକର୍ମରୁ ମଲାହଜିଲା ଯାଏଁ ବନ୍ଦିଶାଳାରେ କଟାଇଲେ ।

# କପାଳ ଲିଖନ

କଥାରେ ଅଛି, 'କପାଳ ଲିଖନ କେ କରିବ ଆନ,' ସମସ୍ତେ ଏ କଥା ଜାଣନ୍ତି। କିନ୍ତୁ ଜଣେ ରାଜା ଥିଲେ ଯେ ସେ ଭାରୀ ଗର୍ବୀ। ସେ କହିଲେ, ସେ କପାଳ ଲିଖନକୁ ଆନ କରିଦେବେ।

ଥରେ କଣ ହେଲା ନା, ସେ ଗର୍ବୀ ରାଜା ବଣକୁ ଶିକାର କରିବା ଲାଗି ଯାଇଥାନ୍ତି। ଗୋଟିଏ ହରିଣ ପଛରେ ଦୌଡ଼ୁ ଦୌଡ଼ୁ ଦିନ ଯାଇ ରାତି ହୋଇଗଲା ପଛେ, ସେ ହରିଣ ଆଉ ଧରାଦେଲା ନାହିଁ। ଶେଷକୁ ରାଜା ବଣ ଭିତରେ ବାଟ ଭୁଲିଯାଇ ଗୋଟିଏ କୁଡ଼ିଆ ପାଖରେ ଆସି ପହଞ୍ଚିଗଲେ। ଅନ୍ଧାର ରାତି, କୁଆଡ଼େ ଆଉ ଯିବେ ବୋଲି ସେ ଯାଇ କୁଡ଼ିଆ ଦୁଆରେ ହାତମାରିଲେ। ସେ କୁଡ଼ିଆଟିରେ ଚଷାଟିଏ ଚାଷୁଣୀଟିଏ ରହନ୍ତି। ସେମାନେ ଦୁଆର ଖୋଲିଦିଅନ୍ତି ତ ରାଜା ଘର ଭିତରକୁ ପଶିଗଲେ। ଏପରି ବେଶ ପୋଷାକ ପିନ୍ଧି ଧନୀ ଲୋକ ଜଣେ ସେ ଚଷା ଘରକୁ କେବେ ଆସି ନଥିଲେ। ଅତିଥିଙ୍କୁ ଘରକୁ ପାଛୋଟି ନେଇ ସ୍ୱାମୀ ସ୍ତ୍ରୀ ତାଙ୍କର ଖୁବ୍ ଚର୍ଚ୍ଚା କଲେ। ବଖରାଟିଏ ବୋଲି ଘର। ଗୋଟିଏ କୋଣରେ ଦୋଳିଟିଏ ଝୁଲୁଥାଏ; ସେଥିରେ ଚଷାର ତିନିଦିନର କୁନି ଝିଅଟି ଶୋଇଥାଏ। ଆଉ ଗୋଟିଏ କୋଣରେ ମୁଠେ ପାଳକୁଟା ପକାଇ ଦେଇ ଚାଷୁଣୀ କନ୍ଥା ଖଣ୍ଡିଏ ପାରିଦେଲା; ଅତିଥି ସେହି ଶେଯରେ ଶୋଇବେ। ଖିଆପିଆ ସରିବା ପରେ ରାଜା ବାଧ ହୋଇ ସେ ଶେଯରେ ଗଡ଼ପଡ଼ ହେଲେ। ଚଷା ଚାଷୁଣୀ ସିନା ଘୁଙ୍ଗୁଡ଼ିମାରି ଶୋଇ ପଡ଼ିଲେ, ହେଲେ ରାଜା ତ ତୁଳା ଗଦିରେ ଶୋଇବା ଲୋକ, ଏ ପାଳକୁଟା ଉପରେ ତାଙ୍କୁ ନିଦ ଲାଗୁଛି କେତେବେ! ସେ ଏପଟ ସେପଟ ହୋଇ ଛଟପଟ ହେଉଛନ୍ତି, ରାତିଅଧ ହୋଇଗଲା। ନିଶା ଗର୍ଜୁଥାଏ। ରାଜା ଶେଯରେ ପଡ଼ି ଚାହିଁଛନ୍ତି, ଏ ସମୟରେ ଚଷାର କବାଟଟି ଆସ୍ତେ ଆସ୍ତେ ଖୋଲିଗଲା। ରାଜା ଦେଖିଲେ ତିନି ଜଣ ପୁରୁଣାକାଳିଆ ସ୍ତ୍ରୀଲୋକ ଘର ଭିତରକୁ ପଶିଆସି ସେ କୁନି ଝିଅଟି ପାଖରେ ଯାଇ ଠିଆ ହୋଇଗଲେ। ସେ ଚିହ୍ନିଗଲେ ଯେ ସେମାନେ ହେଉଛନ୍ତି ତିନି ଭାଗ୍ୟଦେବୀ; ସେହିମାନେହିଁ ମଣିଷ କପାଳରେ ତା ଆଗତ ଭବିଷ୍ୟତ କଥା ଲେଖିଦିଅନ୍ତି। ସତକୁ ସତ ତିନି ଭାଗ୍ୟ ଦେବୀ ଯାଇ ସେ ଝିଅଟି କପାଳରେ ତିନି ଗାର ଲେଖିଦେଲେ। ତାପରେ ସେମାନେ ନିଜ ନିଜ ଭିତରେ କଥାଭାଷା ହେଉ ହେଉ ବଡ଼ ଜଣକ କହିଲେ, "ମୁଁ ଲେଖିଦେଲି ଯେ ଏ ଝିଅଟି "ଭୁବନସୁନ୍ଦରୀ ହେବ।" ମଝିଆ ଭାଗ୍ୟ ଦେବୀ କହିଲେ, "ମୁଁ ଲେଖିଦେଲି ଏ ଝିଅଟି ରାଣୀ ହୋଇ ରାଜସିଂହାସନରେ ବସିବ।" ସାନ ଭାଗ୍ୟ ଦେବୀ କହିଲେ, "ତୁମ ଦି'ଜଣଙ୍କ ଲେଖା ଦେଖି ମୁଁ ଲେଖି ଦେଇଛି ଯେ ଏ ଘରେ ଯେଉଁ ରାଜା ଶୋଇଛନ୍ତି, ଏ ଝିଅ ତାଙ୍କରି ପୁଅକୁ ବିବାହ କରି ତାଙ୍କରି ରାଜ୍ୟର ରାଣୀ ହେବ।" ଏପରି କଥାଭାଷା ହୋଇ ସେମାନେ ଚାଲିଗଲେ।

କିନ୍ତୁ ଏ କଥାତକ ଶୁଣିଦେବା ବେଳୁ ରାଜାଙ୍କ ଭିତରେ ରାଗ ପଶିଗଲା । ସେ କହିଲେ, ''ଜଣ ହେଲା ! ମୁଁ ରାଜା, ଏଇଟା ଚଷାଟାଏ; ଯା ଝିଅ ଫେରେ ମୋ ପୁଅକୁ ବିବାହ କରି ମୋ ସିଂହାସନରେ ବସିବ !! ନା, ମୁଁ ଏକଥା କଦାପି କରାଇ ଦେବି ନାହିଁ । ଭାଗ୍ୟ ବଳ ନା ରାଜା ବଳ– କାହା ବଳ ବେଶି ମୁଁ ଏଥର ଦେଖିନେବି ।''

ରାତି ପାହି ସକାଳ ହେଲା ! ରାଜା ଶେଯରୁ ଉଠି ଚଷା ଓ ଚାଷୁଣୀକୁ ଡାକି କହିଲେ, ''ତୁମେମାନେ ମୋତେ ଚିହ୍ନି ପାରିଲ ନାହିଁ; ମୁଁ ହେଉଛି ଏ ଦେଶର ମହାରାଜା । ମୋର ଅଚଳାଚଳ ସମ୍ପତ୍ତି ପଡ଼ିଛି । ତୁମେ ଯଦି ମୋତେ ଏ ଝିଅଟିକୁ ଦିଅନ୍ତ, ତେବେ ତାକୁ ନେଇ ମୁଁ ଆମ ନଅରରେ ପାଳନ୍ତି । ସେଠାରେ ବିଳାସବ୍ୟସନ ଭିତରେ ରହିଗଲେ ତାକୁ ଦୁଃଖକଷ୍ଟ କିଛି ବାଧନ୍ତା ନାହିଁ ।''

ରାଜାଙ୍କ ମୁହଁରୁ ଏ ପ୍ରକାର ପ୍ରସ୍ତାବ ଶୁଣି ଚଷା ଚାଷୁଣୀ ମୁହଁକୁ ଚାହିଁଲା । ନିଜ ପିଲାର ଭବିଷ୍ୟତ ଉଜ୍ଜ୍ୱଳ ହେଉ ବୋଲି କେଉଁ ବାପମାଆ ଏବେ ନ ଚାହାନ୍ତି । ତଥାପି ଏହି ଝିଅଟି ସେମାନଙ୍କର ପ୍ରଥମ ସନ୍ତାନ, ଦେଇ ଦେବାକୁ ତା ମାଆର ଷୋଳଣା ମନ ହେଲା ନାହିଁ । ସ୍ତ୍ରୀ ଅମଙ୍ଗ ହେଉଛି ଦେଖି ଚଷା କହିଲା, ''ଆଲୋ, ଯେଉଁଠି ପାରୁ ସେଇଠି ବଞ୍ଚିରହୁ; ସୁଖରେ ବଞ୍ଚିଲେ ଆମର ଖୁସି ।'' ତେଣୁ ଶେଷରେ ସେମାନେ ସେ କଅଁଳା ଛୁଆଟିକୁ ରାଜାଙ୍କ ହାତକୁ ଟେକି ଦେଲେ । ରାଜା ଛୁଆଟିକୁ ଧରି ଘୋଡ଼ା ଚଢ଼ି ଗଲେ । ଚଷା ଚାଷୁଣୀ ଲୁହ ଛଳଛଳ ଆଖିରେ ଚାହିଁଥାନ୍ତି, ରାଜା ଘୋଡ଼ା ଛୁଟାଇ ଚାଲିଗଲେ ।

ରାଜାଙ୍କର ଭିତିରି ଉଦ୍ଦେଶ୍ୟ ହେଲା ''ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି ।'' ଝିଅଟିକୁ ଏ ଛୁଆଟିବେଳୁ ମାରିଦେଲେ ଯାଏ । ତେଣୁ ସେ କିଛି ଦୂର ଘୋଡ଼ା ଛୁଟାଇ ଚାଲିଯିବା ପରେ ଜଙ୍ଗଲ ଭିତରେ ଗୋଟିଏ ବାଉଁଶ ବୁଦା ଦେଖି ଝିଅଟିକୁ ସେ ଭିତରକୁ ଫୋପାଡ଼ି ଦେଲେ । ଭାବିଲେ, ଏଠାରେ ପଡ଼ିଥିଲେ ଅଖିଆ ଅପିଆ ଛୁଆଟି ମରିଯିବ; ନହେଲେ ବିଲୁଆ ଶାଗୁଣା ଖାଇଯିବେ ଯେ ଜଣା ଯିବ । ଏଥର ଭାଗ୍ୟଦେବୀ କଣ କରିବେ କରନ୍ତୁ । କିନ୍ତୁ କଥାରେ ଅଛି ''ହରି ରଖେ ମାରେ କିଏ ?'' ଝିଅଟି ଯାଇ ଆଣ୍ଠିଏ ବହଳ ବାଉଁଶପତର ଉପରେ ପଡ଼ିଗଲା ଯେ ତାକୁ ତୂଳା ଗଦିରେ ପଡ଼ିଲା ପରି ଲାଗିଲା । ସେ କୁଆଁ କୁଆଁ ହୋଇ କାନ୍ଦୁଛି, ଏ ସମୟରେ ସେହି ବାଟଦେଇ ଯାଉଥିବା ଜଣେ ଚଷା ସେ କାନ୍ଦ ଶୁଣିବାକୁ ପାଇଲା । ଲୋକଟା ବାଉଁଶ ବୁଦା ଭିତରେ ଖୋଜି ଖୋଜି ଯେତେବେଳେ ଏଡ଼େ ସୁନ୍ଦର କୁନି ଝିଅଟିଏ ପାଇଗଲା, ତା ଛାତି ଆନନ୍ଦରେ କୁଣ୍ଢେ ମୋଟ ହୋଇଗଲା । ତାର ନିଜର ପୁଅଝିଅ ବୋଲି ନଥାନ୍ତି; ତା ଭାର୍ଯ୍ୟା କୋଳରେ ଛୁଆଟିଏ ଧରିବ ବୋଲି ବହୁ ଆଶା କରିଥିଲା । ଚଷା ଏ ଝିଅଟିକୁ ନେଇ ତାକୁ ଦେଖାଉ ଦେଖାଉ ସେ ଅତି ଆଦରରେ ତାକୁ କୋଳକୁ ନେଇଗଲା । ସେ ସ୍ୱାମୀ ସ୍ତ୍ରୀ ଝିଅଟିର ନାଁ ରଖିଲେ ଗୋଲାପ ସୁନ୍ଦରୀ । ସତରେ ଝିଅଟି ଗୋଲାପ ଫୁଲ ପରି ସୁହ୍ଲ ସୁନ୍ଦର ହୋଇ ବଢ଼ିଲା ।

ଝିଅଟିକୁ ତିନି ଚାରି ବର୍ଷ ହୋଇଯାଇଥାଏ; ସେ ଦିନେ ଦାଣ୍ଡରେ ଖେଳୁଛି, ରାଜା ଦୈବକ୍ରମେ ସେ ଗାଆଁକୁ ବୁଲି ଆସିଲେ। ଝିଅଟିର ରୂପ ଦେଖି ସେ ସନ୍ତୁଷ୍ଟ ହୋଇ ତା ବାପମାଆକୁ ଡାକି କହିଲେ, ''ସତରେ, ତୁମ ଝିଅଟି ଖୁବ୍ ସୁନ୍ଦରୀ।''

ଏକଥା ଶୁଣି ସେ ଚଷା ବୁଢ଼ା କହିଲା, ''ମଣିମା, ଦୈବଘଟସୂତ୍ରକୁ ସେ ଆସି ମୋ ଘରେ ଝିଅ ହୋଇଛି। ନହେଲେ ମୋ ପରି ଛାର ଚଷା ବାପୁଡ଼ା ଘରେ ତା ପରି ଝିଅ ଜନ୍ମ ହୁଅନ୍ତା ?''

ରାଜା ଚକିତ ହୋଇ ପଚାରିଲେ, ''ସେ ତା'ହେଲେ ତୁମ ନିଜ ଝିଅ ନୁହେଁ ? ଆଉ ତା'ହେଲେ ?''

କିପରି ସେ ଝିଅଟି ପାଇଲା ଚଷା ତାହା କହିବାରୁ ରାଜା ବୁଝିଗଲେ ଯେ ସେ ଯେଉଁ ଝିଅଟିକୁ ଫୋପାଡ଼ି ଦେଇଥିଲେ, ଏ ଝିଅଟି ସେହି ଝିଅ। ତେଣୁ ସେ ଛଳନା ଦେଖାଇ ଚଷାକୁ କହିଲେ, ''ଆରେ, ମୁଁ କଣ କହୁଥିଲି କି; ମୁଁ ଏ ଝିଅଟି ନେଇ ଆମ ନଅରରେ ପାଳନ୍ତି। ସେଇଠି ରହିଲେ ତା' ଭବିଷ୍ୟତ ସୁଖରେ କଟି ଯାଆନ୍ତା।''

ଏହା ଶୁଣି ଚାଷୁଣୀ ବୁଢ଼ୀର ମୁଣ୍ଡ ବୁଲେଇ ଗଲା। କଣ କରିବ, ଏଡ଼େ ଆଦରର ଝିଅକୁ କିପରି ଦେଇଦେବ ? ପୁଣି ରାଜାଙ୍କୁ ମନା କରିଦେବ ବା କିପରି ? ସ୍ୱାମୀ ସ୍ତ୍ରୀ ଅନେକ ଆଲୋଚନା କରିବା ପରେ ଶେଷରେ ଝିଅଟିକୁ ରାଜାଙ୍କୁ ଦେଇ ଦେଲେ। ରାଜା ଝିଅଟିକୁ ଘୋଡ଼ାରେ ବସାଇ ନେଇ ଯାଉ ଯାଉ ମନେ ମନେ ଭାବିଲେ, ''ଏଥର ଆଉ ତୁ ମୋ ଖାପଚରୁ ଖସି ଯିବୁ ନାହିଁ। ଦେଖିବି, ଭାଗ୍ୟଦେବୀମାନେ କଣ କରିବେ ?'' ନଅରରେ ଯାଇ ପହଞ୍ଚୁ ପହଞ୍ଚୁ ସେ ଝିଅଟିକୁ ଗୋଟିଏ କାଠ ସିନ୍ଦୁକରେ ବନ୍ଦ କରି ଦେଇ ଜଣେ ବିଶ୍ୱସ୍ତ ଚାକରକୁ ଡାକି କହିଲେ, ''ଆରେ, ଏ ସିନ୍ଦୁକଟି ନେଇ ପାହାଡ଼ ଉପରୁ ସମୁଦ୍ର ଭିତରକୁ ଫୋପାଡ଼ିଦେବୁ।''

ଚାକରଜଣକ ରାଜାଙ୍କ ଆଦେଶ ମାନି ସିନ୍ଦୁକଟି ସମୁଦ୍ରକୁ ଫୋପାଡ଼ିଦେଲା ସତ, କିନ୍ତୁ ସେ ସିନ୍ଦୁକଟି ପାଣିରେ ନବୁଡ଼ି ଭାସି ଭାସି ଯାଇ ଆଉ ଗୋଟିଏ ରାଜ୍ୟରେ ଲାଗିଗଲା। ସେ ରାଜ୍ୟରେ ରାଜା ନଥାନ୍ତି ଯେ ଜଣେ ରାଣୀ ରାଜୁତି କରୁଥାନ୍ତି। ସେ ଦିନ ରାଣୀ ଦାସୀମାନଙ୍କୁ ନେଇ ସମୁଦ୍ର କୂଳରେ ବୁଲୁ ବୁଲୁ ଏ କାଠ ସିନ୍ଦୁକଟି ଦେଖି ବିସ୍ମିତ ହୋଇଗଲେ। ସିନ୍ଦୁକଟିକୁ ଖୋଲି ଦିଅନ୍ତି ତ, ତା ଭିତରେ ଗୋଲାପଫୁଲ ପରି ସୁନ୍ଦର ଝିଅଟିଏ ବସିଛି। ରାଣୀ ତାକୁ ଆଦରରେ କୋଳକୁ ନେଇ ଯାଇ ତାର ନାଆଁ ଗାଆଁ ପଚାରି ବୁଝିଲେ ଯେ ତା ନାଆଁ ଗୋଲାପ ସୁନ୍ଦରୀ, କିନ୍ତୁ ଗାଆଁ ନାଆଁ ସେ ଜାଣେ ନାହିଁ। ତା ରୂପ ଗୁଣରେ ମୁଗ୍ଧ ହୋଇ ରାଣୀ ତାକୁ ନିଜର ଧରମଝିଅ କରିନେଲେ। ସେହିଦିନୁ ସେ ରାଜମହଲରେ ରହି ରାଜକୁମାରୀ ପରି ବଢ଼ିବାକୁ ଲାଗିଲା। କ୍ରମେ ସେ ଜଣେ ସୁନ୍ଦରୀ ରାଜକୁମାରୀ ହୋଇ ସମସ୍ତଙ୍କୁ ନିଜର ରୂପ ଗୁଣରେ ମୁଗ୍ଧ କରିବାକୁ ଲାଗିଲା। ତାକୁ ଯେତେବେଳେ ସତର ଅଠର ବର୍ଷ ବୟସ ହେଲା, ସେତେବେଳେ

ତାକୁ ବିବାହ କରିବାଲାଗି ବିଭିନ୍ନ ରାଜ୍ୟରୁ ପ୍ରସ୍ତାବମାନ ଆସିଲା । ଏ ସମୟରେ କଣ ହେଲା ନା, ସେ ରାଜ୍ୟକୁ ଗୋଟିଏ ବଡ଼ ରାଜ୍ୟର ଯୁବରାଜ ନିଜ ଜାହାଜ ନେଇ ବୁଲି ଆସିଲେ । ସେ ଆସି ନଅରରେ ଅତିଥି ହେଉ ହେଉ ଗୋଲାପ ସୁନ୍ଦରୀ ଆଖି ସହିତ ତାଙ୍କ ଆଖି ମିଳିଗଲା । ଦିନ ଦୁଇଟା ଭିତରେ ଏକଥା ରାଣୀଙ୍କ କାନକୁ ଗଲା । ସେ ଗୋଲାପ ସୁନ୍ଦରୀକୁ ପଚାରି ବୁଝିଲେ ଯେ ସେ ସେହି ରାଜକୁମାରଙ୍କୁ ବିବାହ କରିବାକୁ ମନ କରିଛି ! ରାଜକୁମାର ମଧ ଆସି ରାଣୀଙ୍କୁ ମନକଥା ଖୋଲି କହିଦେଲେ । ରାଣୀ କହିଲେ, ‘‘ଦେଖନ୍ତୁ, ଆପଣ ମୋ ଧରମ ଝିଅକୁ ବିବାହ କଲେ ମୁଁ ନିଶ୍ଚୟ ସୁଖୀ ହେବି । କିନ୍ତୁ ଗୋଟିଏ କଥା । ଆପଣ ପୂର୍ବରୁ ଜାଣି ରଖନ୍ତୁ ଯେ ସେ କୌଣସି ରାଜକୁମାରୀ କି ନା, ମୁଁ ଜାଣେନି । ଦିନେ ସମୁଦ୍ର କୂଳରେ ବୁଲୁ ବୁଲୁ ମୁଁ ତାକୁ ଗୋଟିଏ ସିନ୍ଦୁକ ଭିତରେ ବନ୍ଦହୋଇ ପଡ଼ିଥିବା ଅବସ୍ଥାରେ ପାଇଛି । ସେତେବେଳକୁ ତା ବୟସ ମୋଟେ ତିନିବର୍ଷ । ବାପାମାଆଙ୍କ ନାଆଁ ବା ଗାଆଁର ନାଆଁ ତ କହି ପାରିଲା ନାହିଁ । କେବଳ କହିଲା ତା ନାଆଁ ହେଉଛି ଗୋଲାପ ସୁନ୍ଦରୀ । ମୁଁ ତାକୁ ମୋ ନିଜ ଝିଅଠାରୁ ବି ଅଧିକ ସ୍ନେହରେ ପାଳିଛି । ଯେ ତାକୁ ବିବାହ କରିବ, ସେ ମୋ ରାଜଗାଦୀ ପାଇବ । ବେଶ୍, ଏତିକି । ଏଥର ଆପଣ ତାକୁ ବିବାହ କରିବେ କି ନାହିଁ ଠିକ୍ କରନ୍ତୁ ।’’ ଯୁବରାଜ କହିଲେ, ‘‘ଗୋଲାପ ସୁନ୍ଦରୀ, ଯେ କୌଣସି କୂଳରୁ ଆସିଥାନ୍ତୁ ପଛେ, ମୁଁ ତାଙ୍କୁହିଁ ବିବାହ କରିବି । ତେବେ ବିବାହ ପୂର୍ବରୁ, ମୁଁ ଯାଇ ମୋ ପିତାଙ୍କୁ ଏ ସମ୍ବାଦ ଦେଇଦେବି । ତା’ ପରେ ଆସିଲେ, ବିବାହ ଉତ୍ସବ ହେବ ।’’

ରାଣୀ ଏଥରେ ସନ୍ତୁଷ୍ଟ ହୋଇ ନିର୍ବନ୍ଧ କାମ ଶେଷ କରି ଦେଲେ ଏବଂ ଯୁବରାଜ ଏ ସମ୍ବାଦ ଦେବାଲାଗି ନିଜ ରାଜ୍ୟକୁ ଚାଲିଗଲେ । ସେ ଯାଇ ନିଜ ପିତାଙ୍କୁ କହିଲେ, ‘‘ବାପା, ମୁଁ ମୋ ପାଇଁ କନ୍ୟା ଠିକ୍ କରି ଆସିଛି; ନିର୍ବନ୍ଧ ବି ଶେଷ ହୋଇ ଯାଇଛି । ଆପଣଙ୍କର ଅନୁମତି ନେଇ ଫେରିଲେ ବିବାହ ଉତ୍ସବ କରାଯିବ ।’’ କିନ୍ତୁ ଏ ରାଜା ହେଉଛନ୍ତି ସେହି ରାଜା, ଯେ କି କପାଳ ଲିଖନ ବିରୁଦ୍ଧରେ ଲଢ଼େଇ ଆରମ୍ଭ କରିଛନ୍ତି । ତେଣୁ ପୁଅ କଥା ଶୁଣି ରାଜା ପଚାରିଲେ, ‘‘ଆରେ କୁମାର, ସେ କନ୍ୟାଟି ଜଣେ ରାଜକୁମାରୀ ତ ?’’

ଯୁବରାଜ କହିଲେ, ‘‘ସେ ରାଜକୁମାରୀଠାରୁ ବି ଅଧିକ ସୁନ୍ଦରୀ । ଗୋଟିଏ ବିରାଟ ରାଜ୍ୟର ରାଣୀ ତାଙ୍କୁ ନିଜର ଧରମ ଝିଅ କରିଛନ୍ତି । କନ୍ୟା ସହିତ ସେ ନିଜ ରାଜ୍ୟଟିକୁ ବି ଯୌତୁକ ବାବଦକୁ ଦେଇଦେବେ ।’’

‘‘ଧରମ ଝିଅ ! କାହିଁ ତାଙ୍କର କଣ ନିଜର ସନ୍ତାନ ସନ୍ତତି ନାହାନ୍ତି ? ଝିଅଟିକୁ ସେ କେଉଁଠୁ ଆଣିଲେ ?’’

ଯୁବରାଜ ଗୋଲାପ ସୁନ୍ଦରୀର ସମସ୍ତ ବୃତ୍ତାନ୍ତ ବାପାଙ୍କୁ ଶୁଣାଇ ଦେବା ସଙ୍ଗେ ସଙ୍ଗେ ରାଜା ଚକିତ ହୋଇଗଲେ । ତାଙ୍କର ଆଉ ସନ୍ଦେହ ରହିଲା ନାହିଁ ଯେ ଏହି ଝିଅଟିକୁହିଁ ସେ ସମୁଦ୍ରକୁ ଫୋପାଡ଼ି ଦେଇଥିଲେ । ମଣିଷର ଭାଗ୍ୟ

# ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହି ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ଅଲିଭର ଟୁଇଷ୍ଟ
ଦୁଇଟି ନଗରୀର କାହାଣୀ
ଡେଭିଡ୍ କପରଫିଲଡ୍
ଅନେକ ଆଶା
ନିକୋଲାସ୍ ନିକଲବି
ଚକ୍ରାନ୍ତକାରୀ
କୋଡ଼ିଏବର୍ଷ ପରେ
ମଣ୍ଟିକ୍ରିଷ୍ଟୋର ରାଜା
କର୍ସିକାନ୍ ଦୁଇଭାଇ
ବିଚିତ୍ର ତାବିଜ
ମଣ୍ଟରୋଜର ଉପକଥା
ରାଜା ସଲୋମନଙ୍କ ହୀରାଖଣି
ଟମ ସଏର୍
ହକଲବରୀ ଫିନ୍‌ର କାହାଣୀ
ରାଜପୁତ୍ର ଓ ଭିକାରୀ
ପଂପେଇନଗରୀର ଶେଷଦିନ
ଅଶୀଦିନରେ ପୃଥିବୀ ପରିକ୍ରମଣ
ହେଞ୍ଜୁର ରୁପର୍ଟ
ଜେଣ୍ଡାଦୁର୍ଗର ବନ୍ଦୀ
ସୁଇସ୍ ରବିନ୍‌ସନ୍
ରତ୍ନଦ୍ୱୀପ
ଭୌତିକ ବୋତଲ
ପ୍ରବାଳଦ୍ୱୀପ
ଅଦୃଶ୍ୟମାନବ
ଟାଇମ୍ ମେସିନ୍
ଚନ୍ଦ୍ରପୃଷ୍ଠରେ ପ୍ରଥମମାନବ
ଗଲିଭରର ଭ୍ରମଣକାହାଣୀ
ସାଇଲାସ୍ ମାରନର୍
ରବିନ୍‌ସନ୍ କ୍ରୁଶୋ
ରବିନ୍ ହୁଡ୍
ଟମକକାଙ୍କ କେବିନ୍
ମୂଢ଼ି ଓ ଗୋଲାପ
ଚନ୍ଦ୍ରକାନ୍ତମଣି
ସେରଲକ୍ ହୋମସ୍ କାହାଣୀ
ଦେବମାନବ ହରକ୍ୟୁଲିସ୍
ଭୌତିକ କୁକୁର

ପାପ ଓ ପ୍ରାୟଶ୍ଚିତ
ବିପନ୍ନ ନାବିକର କାହାଣୀ
ରାଜା ଆର୍ଥରଙ୍କ ଯୋଦ୍ଧାଗଣ
ଆନନ୍ଦ ମଠ
ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ
ଶକୁନ୍ତଳା
ସେକସ୍‌ପିଅର କାହାଣୀ : ୧ମ, ୨ୟ, ୩ୟ
ପିଲାଙ୍କ କଥାସରିତ ସାଗର
ଟଲଷ୍ଟୟ କାହାଣୀ · ୧ମ, ୨ୟ, ୩ୟ
ହୋମର୍ କାହାଣୀ
ଆଣ୍ଡରସନ୍‌ଙ୍କ କାହାଣୀ
ଗର୍କୀ କାହାଣୀ : ୧ମ, ୨ୟ
ଫକୀରମୋହନଙ୍କ କାହାଣୀ : ୧ମ, ୨ୟ
ମୋପାସାଁ କାହାଣୀ: ୧ମ, ୨ୟ, ୩ୟ, ୪ର୍ଥ
ପ୍ରେମଚନ୍ଦ କାହାଣୀ: ୧ମ, ୨ୟ, ୩ୟ, ୪ର୍ଥ
ଆରବଦେଶର କାହାଣୀ
ସିନ୍ଦବାଦ କାହାଣୀ
ଆଲାଦ୍ଦୀନର କୁହୁକଦୀପ
ମହାକବି କାଳିଦାସ କାହାଣୀ ୧ମ, ୨ୟ
ପିଲାଙ୍କ ଛ'ମାଣ ଆଠଗୁଣ୍ଠ
ଗ୍ରୀମ୍‌ସଙ୍କ କାହାଣୀ · ୧ମ, ୨ୟ
ବୀରବଲ କାହାଣୀ
ରିପଭାନ୍ ଉଇଙ୍କଲ
ଦୁଃଖ ପରେ ସୁଖ
ଜାତକ କାହାଣୀ : ୧ମ, ୨ୟ, ୩ୟ, ୪ର୍ଥ
ବେତାଳ କାହାଣୀ : ୧ମ, ୨ୟ
ବାଇବେଲ କାହାଣୀ · ୧ମ, ୨ୟ
ରାମାୟଣ କାହାଣୀ
ମହାଭାରତ କାହାଣୀ
ଈଶପ କାହାଣୀ
ଗ୍ରୀସ୍‌ଦେଶର ପୁରାଣ କାହାଣୀ
ରୋମରାଜ୍ୟର ପୁରାଣକାହାଣୀ
ଆଲିବାବା କାହାଣୀ
ବିଚିତ୍ର ଦେଶରେ ଏଲିସ
ରୁସ୍ତମ କାହାଣୀ
କୃଷ୍ଣସୁନ୍ଦର

ଏହା ଛଡ଼ା ଆହୁରି ଅନେକ ଭଲ ବହି ଯାହା ସବୁ ଦେଶର ପାଠକଙ୍କୁ ସବୁବେଳେ ମୁଗ୍ଧ କରିଛି।

**ପ୍ରକାଶକ – ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨**